

# ଭାବକୁ ନିକଟ ସେ...


ସଂପାଦନା

ଡକ୍ଟର ଶ୍ରୀଚରଣ ମହାନ୍ତି

ଶ୍ରୀ ପୀତବାସ ରାଉତରାୟ

# ଭାବକୁ ନିକଟ ସେ...

(ପ୍ରାଚୀନ ରଚନାରୁ ଶ୍ରୀଜଗନ୍ନାଥଙ୍କ ଭକ୍ତିଗୀତ)

*ସଂପାଦନା :*

ଡକ୍ଟର ଶ୍ରୀଚରଣ ମହାନ୍ତି

ଶ୍ରୀ ପୀତବାସ ରାଉତରାୟ



ଓଡ଼ିଶା ସାହିତ୍ୟ ଏକାଡେମୀ

ସଂସ୍କୃତି ଭବନ, ଭୁବନେଶ୍ୱର

# ଭାବକୁ ନିକଟ ସେ...

(ପ୍ରାଚୀନ ରଚନାରୁ ଶ୍ରୀଜଗନ୍ନାଥଙ୍କ ଭକ୍ତିଗୀତ)

*ସଂପାଦନା :*
**ଡକ୍ଟର ଶ୍ରୀଚରଣ ମହାନ୍ତି**
**ଶ୍ରୀ ପୀତବାସ ରାଉତରାୟ**

*ଅକ୍ଷରସଜ୍ଜା :*
**କୁମାରିକା-ଗଙ୍ଗୋତ୍ରୀ**
୮୮୬, ଚଣ୍ଡିମାତା କଲୋନୀ
ରସୁଲଗଡ଼, ଭୁବନେଶ୍ୱର-୭୫୧ ୦୧୦

*ମୁଦ୍ରଣ :*
**ସତ୍ୟବ୍ରତ ଅଫ୍‌ସେଟ୍**
**ଟାଉନ ହଲ ରୋଡ୍,**
**କଟକ - ୭୫୩୦୦୯**

ପ୍ରଥମ ସଂସ୍କରଣ : **୨୦୧୪**

*ପ୍ରକାଶକ :*
**ଓଡ଼ିଶା ସାହିତ୍ୟ ଏକାଡେମୀ**
ସଂସ୍କୃତି ଭବନ, ଭୁବନେଶ୍ୱର-୭୫୧୦୧୪

*ମୂଲ୍ୟ : ଟ ୧୦୦/-*
*(ଏକଶତ ଟଙ୍କା ମାତ୍ର)*

# Bhabaku Nikata Se...

(An Anthology of Ancient Devotional Songs on Lord Jagannath)

*Editors :*
**Dr. Sricharan Mohanty**
**Sri Pitabasa Routray**

*D.T.P.*
**Kumarika-Gangotri**
886, Chandimata Colony
Rasulgarh, Bhubaneswar -10

*Printer :*
**Satyabrata Offset**
Town Hall Road, Cuttack - 9

*First Edition :*
**2014**

*Publisher :*
**Odisha Sahitya Akademi**
Sanskruti Bhawan
Bhubaneswar - 14

*Price :*
**Rs.100.00**
**(Rupees One Hundred) only**

**ISBN 81-7586-174-9**

ଭେଳା ବୁଡ଼ିବ ହେଳା କଲେ କହୁଛି ।
ଭଙ୍ଗା ନାବରେ କେବା ସିନ୍ଧୁ ତରିଛି ରେ ॥
ଭାବକୁ ନିକଟ ସେ ଅଭାବେ ଦୂର ।
ଭକତ ଦାସ କହେ ଜୀବନ ଛାର ରେ ॥

# ମୁଖଶାଳା

ମହାପ୍ରଭୁ ଶ୍ରୀ ଶ୍ରୀ ଜଗନ୍ନାଥ କେବଳ ଜଗତର ନାଥ ନୁହନ୍ତି,ଓଡ଼ିଆ ଜାତିର ମଉଡ଼ମଣି ମଧ୍ୟ । ଓଡ଼ିଶାର ସାହିତ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ, ପରମ୍ପରା, ପର୍ବପର୍ବାଣୀ ଏବଂ ସର୍ବୋପରି ଓଡ଼ିଆ ଜନଜୀବନକୁ ଆବହମାନ କାଳରୁ ଆଚ୍ଛନ୍ନ କରି ରଖିଛନ୍ତି ମହାପ୍ରଭୁ । ସେ ଉତ୍କଳୀୟ ସଂସ୍କୃତିର ନାଭିକେନ୍ଦ୍ର ତଥା ଓଡ଼ିଆ ଜୀବନଧାରାର ପ୍ରାଣସ୍ପନ୍ଦନ ।

ଓଡ଼ିଆ କବି ବା ଲେଖକ କିଛି ରଚନା କଲେ ପ୍ରଥମେ ସେ ଡାକେ ତା'ର ପ୍ରତମ୍ୟ ଦେବତା ଜଗନ୍ନାଥଙ୍କୁ । ଠାକୁରଙ୍କ ନାନା ଗୁଣ, ଲୀଳାକୁ ମନେ ପକାଇ ପ୍ରିୟ କବିମାନେ ଗୀତ ଗାଆନ୍ତି ।

ପରମ୍ପରାକ୍ରମେ ସାରଳା ଦାସଙ୍କ ଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଅନେକ କବି ନିଜର ଅନ୍ୟ ରଚନା ସହିତ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ନିମନ୍ତେ ଭଜନ, ଜଣାଣ, ଛାନ୍ଦ, କୀର୍ତ୍ତନ ରଚନାକରି ଆସିଛନ୍ତି । ସେ ରଚନାର ପରିମାଣ ଏତେ ବ୍ୟାପକ ଓ ବୃହତ ଯେ, ସାଧାରଣ ପାଠକ ସେ ସମସ୍ତଙ୍କୁ ଉପଯୋଗ କରିବା ସୁବିଧାଜନକ ନୁହେଁ ।

ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରକାଶନ ବିଭାଗ ବେଶ୍ ସମୃଦ୍ଧ । ଏହାର କାର୍ଯ୍ୟକାରୀ ସମିତିର ପରାମର୍ଶକ୍ରମେ ପ୍ରାଚୀନ ଓ ମଧ୍ୟ ଯୁଗର କବିମାନଙ୍କର ଜଗନ୍ନାଥଙ୍କ ଭକ୍ତିଗୀତର ଏକ ସଂକଳନ ପ୍ରସ୍ତୁତ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ପ୍ରାଧ୍ୟାପକ ଡକ୍ଟର ଶ୍ରୀଚରଣ ମହାନ୍ତି

ଓ ଶ୍ରୀ ପୀତବାସ ରାଉତରାୟଙ୍କୁ ଏ ସଂପାଦନା କାର୍ଯ୍ୟପାଇଁ ଦାୟିତ୍ୱ ଅର୍ପଣ କରାଯାଇଥିଲା । ସଂକଳକ ଦ୍ୱୟ ୪୭ ଜଣ କବିଙ୍କର ଏକଶହଟି ସୁନିର୍ବାଚିତ କବିତା ଏ ସଂକଳନରେ ସ୍ଥାନିତ କରିଛନ୍ତି ।

ପୂର୍ବରୁ ଡକ୍ଟର ଶ୍ରୀଚରଣ ମହାନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀ ସହିତ ବିବିଧ କାର୍ଯ୍ୟରେ ସଂପୃକ୍ତ । "ଭିକାରୀ ଚରଣ ପଟ୍ଟନାୟକ" ଓ "କବିବର ରାଧାନାଥ"ଙ୍କ ସଂପର୍କରେ ତାଙ୍କର ଦୁଇଟି ମନୋଗ୍ରାଫ୍ ସାହିତ୍ୟ ଏକାଡେମୀ ତରଫରୁ ପୂର୍ବରୁ ପ୍ରକାଶିତ ହୋଇ ବେଶ ପାଠକୀୟ ଆଦର ପାଇଛି । ସେ ଆକାଶବାଣୀ ଓ ଦୂରଦର୍ଶନର ସ୍ୱୀକୃତି ପ୍ରାପ୍ତ ଜଣେ ଗୀତିକାର, ଶିଶୁ ସାହିତ୍ୟିକ ଓ ସମାଲୋଚକ । ଓଡ଼ିଶା ସରକାରଙ୍କ ଶିକ୍ଷା ସେବାରେ ଯୋଗଦାନ କରି ଓଡ଼ିଶାର ବିଭିନ୍ନ ସରକାରୀ କଲେଜରେ କାର୍ଯ୍ୟକରି ସେ ଅବସର ନେଇଛନ୍ତି । ଶ୍ରୀ ପୀତବାସ ରାଉତରାୟ ଜଗନ୍ନାଥଙ୍କ ସଂପର୍କରେ ଅନେକ ଗ୍ରନ୍ଥ ସଂପାଦନା କରି ଖୁବ୍ ଲୋକପ୍ରିୟ ହୋଇଛନ୍ତି ଏବଂ ଜଣେ ସାରସ୍ୱତ ସଂଗଠକ ଭାବରେ ତାଙ୍କର ସୁନାମ ରହିଛି ।

ଏହି ଭକ୍ତିଗୀତ ସଂକଳନର ସୁସମ୍ପାଦନା ନିମନ୍ତେ ସଂକଳକ ଦ୍ୱୟ ଧନ୍ୟବାଦାର୍ହ । ଧନ୍ୟବାଦାର୍ହ ବିଶିଷ୍ଟ ଗବେଷକ ଅଧ୍ୟାପକ ଡକ୍ଟର ଦେବେନ୍ଦ୍ର କୁମାର ଦାଶ ଏହି ସଂକଳନ ପ୍ରସ୍ତୁତି କ୍ଷେତ୍ରରେ ଅକୁଣ୍ଠ ପରାମର୍ଶ ଓ ସହଯୋଗ ନିମନ୍ତେ । "ଭାବକୁ ନିକଟ ସେ ..." ପୁସ୍ତକଟି ସବୁବର୍ଗର ପାଠକ / ପାଠିକାମାନଙ୍କର ଆଦର ଲାଭ କରିବ ବୋଲି ଆଶା ଓ ବିଶ୍ୱାସ ।

ଭୁବନେଶ୍ୱର — **ବିଜୟ କୁମାର ନାୟକ**

୦୯ । ୦୩ । ୨୦୧୪ — ସଚିବ

ଓଡ଼ିଶା ସାହିତ୍ୟ ଏକାଡେମୀ

# ମୁଖବନ୍ଧ

'ଭାବକୁ ନିକଟ ସେ...' ପୁସ୍ତକରେ ଶହେଟି ଭକ୍ତି ସଂଗୀତ ରହିଛି । ମହାକବି ସାରଳା ଦାସଙ୍କ ଠାରୁ ଆରମ୍ଭ କରି ବିଭିନ୍ନ ସମୟର କବିମାନଙ୍କ ରଚିତ ଭକ୍ତି-ଗୀତ ଏଇ ପୁସ୍ତକରେ ସ୍ଥାନ ପାଇଛି । ପରମବ୍ରହ୍ମ ଶ୍ରୀ ଶ୍ରୀ ଜଗନ୍ନାଥ କେବଳ ଓଡ଼ିଆ ଜାତିର ଇଷ୍ଟ ଦେବତା ନୁହନ୍ତି, ସେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ପ୍ରଭୁ । ଯେଉଁ କବିମାନେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ଧ୍ୟାନ ଧାରଣାରେ ସ୍ଥାନ ଦେଇ ଏଇ ଭକ୍ତି-ଗୀତଗୁଡ଼ିକୁ ରଚନା କରିଛନ୍ତି ସେମାନେ ଆମର ନମସ୍ୟ ।

କବିଙ୍କ ହୃଦୟରେ ଯେତେବେଳେ ଭକ୍ତିଭାବ ଓ ବ୍ୟାକୁଳତା ଜାଗ୍ରତ ହୁଏ ସେଇ ଉପଲବ୍ଧି ତାଙ୍କୁ ଅନୁପ୍ରେରିତ କରେ ତାହା ବ୍ୟକ୍ତ କରିବା ପାଇଁ । ଭଗବାନଙ୍କୁ ପାଇବା ପାଇଁ ଅନେକ ମାର୍ଗ ଅଛି । ସେଥିମଧ୍ୟରୁ କଳିଯୁଗରେ 'ନାରଦୀୟ ଭକ୍ତି' ସର୍ବୋତ୍ତମ ବୋଲି ଶ୍ରୀରାମକୃଷ୍ଣ ପରମହଂସ କହିଛନ୍ତି । ନାରଦଙ୍କ ଭକ୍ତି ଅନନ୍ୟ । ଅହରହ ସେ ଈଶ୍ୱରଙ୍କର ନାମ ଓ ଗୁଣଗାନ କରି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଭ୍ରମଣ କରନ୍ତି ହାତରେ ବୀଣା ଧରି । ଗୀତ ଓ ବାଦ୍ୟର ଝଙ୍କାର ହୃଦୟର ଅନ୍ତରଂଗ ସ୍ଥାନରେ ସ୍ପନ୍ଦନ ସୃଷ୍ଟିକରେ । ସେଇ ସ୍ପନ୍ଦନ ଯେତେବେଳେ ବାଙ୍ମୟ ହୁଏ ସେତେବେଳେ ତାହା ଭକ୍ତି ଗୀତରେ ରୂପାନ୍ତରିତ ହୁଏ ।

ଭକ୍ତ କବିଙ୍କର ମନରେ ଯେତେବେଳେ ଈଶ୍ୱରଙ୍କୁ ପାଇବା ନିମନ୍ତେ ବ୍ୟାକୁଳତା ସୃଷ୍ଟି ହୁଏ ସେତେବେଳେ ତାଙ୍କ ମନ କେବଳ ନିର୍ମଳ ହୁଏ ନାହିଁ, ତାଙ୍କ ଭାବ ଓ ଭାବନାରେ ସମର୍ପଣ ଭାବ ଦୃଢ଼ ହୁଏ । ସେତେବେଳେ କବି ମାନସରେ ପରମ ହିଁ ସର୍ବତ୍ର ଦୃଶ୍ୟ ହୁଅନ୍ତି । ଗୀତାର ନବମ ଅଧ୍ୟାୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି :

'ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହଂ'

ଶ୍ରୀକୃଷ୍ଣ କହୁଛନ୍ତି ଯେଉଁମାନେ ଆଉ ସବୁ ଛାଡ଼ି ମୋତେ ଧ୍ୟାନ କରନ୍ତି, ମୋତେ ଭଜନ୍ତି, ସେଇ ନିତ୍ୟଭକ୍ତମାନଙ୍କୁ ପାଇବା ଓ ରକ୍ଷା କରିବା ଦାୟିତ୍ୱ ମୁଁ ନିଜେ ନିଏ । କାରଣ ସେମାନେ ଫଳ ପାଇବା କଥା ବିଚାର ନକରି ମୋ ଉପରେ ସବୁ ଦାୟିତ୍ୱ ଦେଇ କାମ କରି ଯାଆନ୍ତି । ପୁଣି ବିଭୂତି ଯୋଗରେ ଶ୍ରୀକୃଷ୍ଣ କହିଛନ୍ତି :

'ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକଂ
ଦଦାମି ବୁଦ୍ଧି ଯୋଗଂ ତଂ ଯେନ ମାମୁପଯାନ୍ତିତେ'

ଏହିପରି ପ୍ରୀତିରେ ଭଜୁଥିବା ଓ ସର୍ବଦା ମୋ ସହିତ ଲାଗି ରହିଥିବା ସେଇ ଭକ୍ତମାନଙ୍କୁ ସେଇ ବୁଦ୍ଧି ମୁଁ ଦିଏ, ଯହିଁରେ ସେମାନେ ମୋ ପାଖକୁ ଆସନ୍ତି - ଅର୍ଥାତ୍ ମୋତେ ପ୍ରାପ୍ତ ହୁଅନ୍ତି । ଏ ସବୁ କହିବାର ତାତ୍ପର୍ଯ୍ୟ ହେଉଛି ସାଗରରେ ମିଶିବା ପାଇଁ ନଦୀ ଧାଇଁବା ପରି ଯେତେବେଳେ ପରମଙ୍କୁ ପାଇବା ପାଇଁ ଭକ୍ତ ବ୍ୟାକୁଳ ହୁଏ ସେତେବେଳେ ଅନ୍ତରର ଉଦ୍ଦୀପନ ତାଙ୍କୁ ବାଚାଳ କରେ ପ୍ରଭୁଙ୍କ ଗୀତ ଗାଇବା ପାଇଁ । ତେଣୁ ଭକ୍ତ ସର୍ବଦା ଭଗବାନଙ୍କର ପ୍ରିୟ । ନାରଦଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ କହିଛନ୍ତି :

'ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନା ହୃଦୟେ ନଚଃ
ମଦ୍‌ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦଃ'

ହେ ନାରଦ ! ମୁଁ ବୈକୁଣ୍ଠରେ ବା ଯୋଗୀମାନଙ୍କ ହୃଦୟରେ ନୁହେଁ, ଯେଉଁଠାରେ ମୋର ଭକ୍ତମାନେ, ମୋର ଗୁଣ କୀର୍ତ୍ତନ କରନ୍ତି ସେଇମାନଙ୍କ ପାଖରେ ହିଁ ଥାଏ ।

ସାହିତ୍ୟ ସମ୍ପର୍କ ସ୍ଥାପନ କରିବାର ଏକ ମାଧ୍ୟମ । ସମାଜ ଗଠନ, ସମାଜର ହିତସାଧନ ଓ ମଣିଷ ମନରେ ଉତ୍ତରଣ ଭାବନା ସୃଷ୍ଟି କରିବା ସାହିତ୍ୟର ଧର୍ମ । ଏହା ଦ୍ୱାରା ସମାଜ ସଂଗଠିତ ହୁଏ, ହିତ ସାଧନ କାର୍ଯ୍ୟ ବେଗଗାମୀ ହୁଏ ଏବଂ ପ୍ରାଣୀମାନଙ୍କ ମଧ୍ୟରେ ଈଶ୍ୱର ମନୁଷ୍ୟଙ୍କୁ ଦେଇଥିବା ବିବେକ ଓ ବୁଦ୍ଧିର ସଦୁପଯୋଗ କରିବା ସହଜ ହୁଏ ।

ଓଡ଼ିଶା ସାହିତ୍ୟ ଏକାଡେମୀ ଏଇ ଗ୍ରନ୍ଥ ପ୍ରକାଶ କରି ଏକ ଉତ୍ତମ କାର୍ଯ୍ୟ କରିଥିବାରୁ ମୁଁ ସଂକଳକମାନଙ୍କୁ ସାଧୁବାଦ ଜଣାଇବା ସହିତ ଯେଉଁ କବିମାନେ ଏସବୁ ଭକ୍ତିଗୀତ ରଚନା କରିଛନ୍ତି ଏବଂ ଯେଉଁମାନେ ଏ ସବୁ ପରିବେଷଣ କରି ଅଜସ୍ର ଶ୍ରୋତାଙ୍କ ଚିତ୍ତ ଉଲ୍ଲସିତ କରିଛନ୍ତି ସେ ସମସ୍ତଙ୍କୁ ମଧ ଏକାଡେମୀ କୃତଜ୍ଞତା ଜଣାଉଛି । 'ଭାବକୁ ନିକଟ ସେ...' ଶ୍ରୀ ଜଗନ୍ନାଥ ଭକ୍ତିଗୀତ ପ୍ରକାଶ କରିବା ଦ୍ୱାରା ଏକାଡ଼େମୀ ଭକ୍ତ ଓ ଭଗବାନଙ୍କ ମଧରେ ସେତୁବନ୍ଧର କାର୍ଯ୍ୟ କରିଛି ମାତ୍ର । ସଂକଳକ ଡକ୍ଟର ଶ୍ରୀଚରଣ ମହାନ୍ତି ଏବଂ ଶ୍ରୀ ପୀତବାସ ରାଉତରାୟ ଏଇ ମହତ୍ କାର୍ଯ୍ୟ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଦେବା ସହିତ ମହାପ୍ରଭୁ ସେମାନଙ୍କ ମଙ୍ଗଳ କରନ୍ତୁ ଏଇ ପ୍ରାର୍ଥନା କରୁଛି ।

ଭୁବନେଶ୍ୱର
୦୯ । ୦୩ । ୨୦୧୪

**ସାତକଡ଼ି ହୋତା**
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ଆମୁଖ

ଜଗନ୍ନାଥ, ଜଗତର ନାଥ । ତପୀର ନାଥ ପାପୀର ବି ନାଥ । ଧର୍ମର ବାଡବତା ମଧ୍ୟରେ ସେ ବନ୍ଧା ନୁହନ୍ତି, ସେ ବାନ୍ଧି ହୋଇ ଯାଆନ୍ତି ଭକ୍ତର ଭକ୍ତିରେ । ସେ ଭକ୍ତର ବନ୍ଧୁ, କରୁଣାର ସିନ୍ଧୁ, କୃପାସିନ୍ଧୁ, ଜଗବନ୍ଧୁ, ଜଗନ୍ନାଥ । ଚିତା-ଚଇତନ,କଣ୍ଠି-କଉପୁନୀ, ମାଳା-ତିଳକ ଆଦି ଧର୍ମୀୟ-ଭେକ ସବୁକୁ ଆପଣେଇଲେ ବି କିଛି ବାନା ବାନ୍ଧି ନଥିବା ବ୍ୟକ୍ତିହିଁ ତାଙ୍କର ଅତି ଆପଣାର । କେବଳ ସେ ଭକ୍ତର ନୁହନ୍ତି, ସମଗ୍ର ଓଡ଼ିଆ ଜାତିର; ଜନ୍ମ-ମୃତ୍ୟୁ, ଦୁଃଖ-ସୁଖ, ହସ-କାନ୍ଦ, ଅଳି-ଅର୍ଦ୍ଦଳି, ସର୍ବତ୍ର ଜଗନ୍ନାଥ ବିଦ୍ୟମାନ । ଜ୍ଞାତ ଅଜ୍ଞାତରେ ଓଡ଼ିଆର ହାତ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଉପରକୁ ଉଠିଯାଏ, ଜଗାବଳିଆର ଶରଣ ସେ ନିଏ । ଶରଣପଞ୍ଜରର ଅନ୍ତର୍ଯ୍ୟାମୀ ମହାବାହୁ ଭକ୍ତର ଅଜ୍ଞାତରେ ବି ତା'ର ମନ ବାଞ୍ଛା ପୂରଣ କରନ୍ତି । ବଡ଼ ମନୁଆ ସେ ଠାକୁର । ରାଜା-ପ୍ରଜା, ଧନୀ-ଦରିଦ୍ର, ଭୋଗୀ-ଯୋଗୀ, ବୃଦ୍ଧ-ବାଳୁତ ସଭିଙ୍କର ସେ ମିତ୍ର । ତାଙ୍କ ଚଳଣି ରାଜା ମହାରାଜା ପରି, ପୁଣି କେତେବେଳେ ସାଧାରଣ ମଣିଷ ପରି । ରାଜାଧିରାଜ ପରି ତାଙ୍କ ଭୋଜନ-ଶୟନ,ଉପବେଶନ ବି । ଷାଠିଏ ପଉଟି ଅନ୍ନ-ବ୍ୟଞ୍ଜନ, ଛପନ ଭୋଗ ସହିତ ଶାଗ-ଦହିପଖାଳରେ ବି ତାଙ୍କର ରୁଚି । ବର୍ଷସାରା ପର୍ବପର୍ବାଣି,ବାରମାସରେ ତେର ଯାତରା, ସବୁ ମହା ଆଡ଼ମ୍ବର ସହିତ ।

ଦିବାରାତ୍ର ସଚରାଚର ସୃଷ୍ଟିକୁ ଦୃଷ୍ଟି ଦେଇଥିବାରୁ ଚକା ଆଖିରେ ପଲକ ପଡ଼େନା, ଅପଲକ ନେତ୍ରରେ ଭକ୍ତର ହୃଦଖୋଲା ଡାକପାଇଁ ସେ ଚାହିଁ ଥା'ନ୍ତି । ଦୟାନିଧି ଦୟା ବାଣ୍ଟି ବାଣ୍ଟି ଚାଲିଥା'ନ୍ତି,ଖାଲି ଭକ୍ତର ହୃଦୟ କପାଟ ଖୋଲା ଥିବା ଦରକାର । ଭକ୍ତ ତାଙ୍କ ପଛରେ ଧାଇଁବ କ'ଣ,କେତେ ବେଳେ ସେ ଭକ୍ତ ପଛେ ପଛେ ଧାଁଇଥା'ନ୍ତି । ବଡ଼ ଅଦ୍ଭୁତ ସେ ସମ୍ପର୍କ । ମାତ୍ର ଭକ୍ତର ଆକୁଳ ନେତ୍ରରେ ସେ ଧରା ପଡ଼ନ୍ତି । ଭକ୍ତ ଭଗବାନ କେତେବେଳେ ଏକାକାର ହୋଇ ଯାଆନ୍ତି ।

ଏହି ଅଦ୍ଭୁତ ଲୀଳା ଭକ୍ତକବିମାନଙ୍କର ଦୃଷ୍ଟିରୁ ବାଦ ପଡ଼େନା । କବିଙ୍କ ଲେଖନୀରେ ରୂପପାଏ ମହାପ୍ରଭୁଙ୍କ ଲୀଳା । ଭଜନ, ଜଣାଣ ତାଙ୍କୁ ଡାକିବା ପାଇଁ ମାଧ୍ୟମ ମାତ୍ର । ବଡ଼ ସଙ୍ଗୀତ ପ୍ରିୟ ସେ ଠାକୁର । ଜପ-ତପ-ଯୋଗ-ଧ୍ୟାନ ଠାରୁ ମହତ୍ତର ମାର୍ଗ ଜ୍ଞାନର ସଂଗୀତ । ବିଜ୍ଞାନ ଏବେ ପ୍ରମାଣ କଲାଣି ବୃକ୍ଷ, ଲତା, ଜୀବଜନ୍ତୁ, ଅଜ୍ଞାନ ଶିଶୁ ବି ଆକୃଷ୍ଟ ହୁଅନ୍ତି ସଂଗୀତ ଦ୍ୱାରା । ଅନେକ ରୋଗର ଉପଚାର ବି ସଂଗୀତ ସହ ସଂପୃକ୍ତ । ଯେପରି କ୍ଷୀରଲୋଭରେ ଧେନୁ ପଛେପଛେ ବତ୍ସା ଧାଉଁଥାଏ,ଭକ୍ତର ଆନ୍ତରିକ ଡାକ ଶୁଣିବା ପାଇଁ ଭାବଗ୍ରାହୀ ଭଗବାନ ବି ସେପରି ଧାଆନ୍ତି ବୋଲି କହିଛନ୍ତି ଭକ୍ତକବି ସାଲବେଗ ।

ଭକ୍ତ ବି କହେ, ହେ ଠାକୁର ମୁଁ ତୋତେ କିଛି ମାଗୁନି,ତୋ ଦରଶନ ପାଇଁ,ତୋ ଭକ୍ତ ସାଧୁ ସନ୍ଥଙ୍କର ପାଦଧୂଳି ପାଇବା ପାଇଁ ଶରଧା ବାଲିରୁ ହାତେ ମାଗୁଛି । ଆଉ କେଉଁ ଭକ୍ତ ତୋ ଅବଢ଼ା ଛପନ ଭୋଗ ବଦଳରେ ତୋକେ ଟଙ୍କ ତୋରାଣିରେ ସନ୍ତୁଷ୍ଟ ବୋଲି ପରମ ତୃପ୍ତିରେ ଗୀତ ଗାଇ ଗାଇ ଚାଲେ । ଭ୍ରାନ୍ତ ସାମାଜିକ କଟକଣାରେ ମନ୍ଦିର ଭିତରକୁ ପଶିପାରୁନଥିବା ଭକ୍ତଗଣଙ୍କୁ ଦର୍ଶନ ଦେବା ପାଇଁ ଜ୍ୱରରୁ ଉଠି ଦାଣ୍ଡକୁ ବାହାରି ଆସନ୍ତି ଠାକୁର । ସାଥିରେ ବଡ଼ଭାଇ, ଭଉଣୀ ଓ ସୁଦର୍ଶନ । ଅନେକ ଦିନ ଜ୍ୱରରେ ପଥ୍ୟ ଖାଇ ଖାଇ ଠିକ୍ ଆମ ମଣିଷମାନଙ୍କ ପରି ତାଙ୍କ ମାଉସୀ ମା'ର ପୋଡ଼ପିଠା ଖାଇବାକୁ ଇଚ୍ଛାହୁଏ ଠାକୁରଙ୍କର । ଆଉ ଇଚ୍ଛାହୁଏ ଟିକେ ଦାଣ୍ଡକୁ ଆସି ସମସ୍ତଙ୍କୁ ଦେଖା କରିବା ପାଇଁ ଭକ୍ତବନ୍ଧୁ ଭାବଗ୍ରାହୀଙ୍କର । କି' ଶ୍ରଦ୍ଧା ଆମ ଠାକୁରଙ୍କର ଭକ୍ତମାନଙ୍କୁ ଦର୍ଶନ ଦେବା ପାଇଁ ।

ପ୍ରଭୁଙ୍କର ଅଗଣିତ ନାମରୁ ମାତ୍ର ସହସ୍ର ନାମରେ ସାଧୁମାନେ କରନ୍ତି ସ୍ତୁତି । ମାତ୍ର ସାଧାରଣ ଭକ୍ତ ପାଇଁ ଅନ୍ତରଖୋଲି ନାମ ପଦେ ଗାଇ ଦେଇ ହାତ ଟେକିଦେଲେ ବି ରତ୍ନ ସିଂହାସନରୁ ସେ ଓହ୍ଲାଇ ଆସନ୍ତି । ତାଙ୍କ ସହସ୍ର ନାମ ଭଳି ଭକ୍ତକବିମାନଙ୍କର ତାଙ୍କ ଉଦ୍ଦେଶ୍ୟରେ ସହସ୍ର ଭଜନ, ଜଣାଣ, କୀର୍ତ୍ତନ ହୋଇଛି ରଚନା । ଅମାପ ଫୁଲ ପସରା ଭିତରୁ ମାତ୍ର ଏକଶହଟି ଫୁଲ ଗୁନ୍ଥି ମାଳାଟିଏ ରଚନା କରିବାର ଏ ପ୍ରୟାସ ।

ଓଡ଼ିଆ ସାହିତ୍ୟରେ ପ୍ରାୟ ସମସ୍ତ ପ୍ରାଚୀନ ଓ ମଧ୍ୟ ଯୁଗର କବିଙ୍କ ଲେଖନୀରେ ମହାପ୍ରଭୁ ଜଗନ୍ନାଥଙ୍କ ସମ୍ପର୍କରେ ରହିଛି ବନ୍ଦନା । କାବ୍ୟର ଆଦ୍ୟରେ କିମ୍ବା ଛାନ୍ଦ ଚଉପଦୀରେ, ଭଜନ ଜଣାଣରେ ଭରି ରହିଛି ଗୁହାରୀ – କବିଙ୍କର ନିଜର କିମ୍ବା

ସଚରାଚର ଭକ୍ତଙ୍କର । ଆଧୁନିକ ଯୁଗର ଅନେକ କବି ଓ ଗୀତିକାରଙ୍କ ଦ୍ୱାରା ମହାପ୍ରଭୁଙ୍କ ବିବିଧ ଲୀଳା ସମ୍ପର୍କରେ ଏବେବି ଲେଖା ହେଉଛି ଅନେକ ଅନକେ ରଚନା ।

ଏ ପୁସ୍ତକର ଶିରୋନାମ ''ଭାବକୁ ନିକଟ ସେ ...'' କବି ଭକ୍ତଚରଣ ଦାସଙ୍କ "ମନବୋଧ ଚଉତିଶା''ର ଗୋଟିଏ ପାଦର ଅଂଶରୁ ନିଆ ଯାଇଛି ।

ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି,ସଚିବ ଓ କାର୍ଯ୍ୟକାରୀ ସମିତିର ନିଷ୍ପତ୍ତିକ୍ରମେ ପ୍ରାଚୀନ ଓ ମଧ୍ୟ ଯୁଗୀୟ କବିଙ୍କ ରଚନାରୁ ଭକ୍ତି ଗୀତଗୁଡ଼ିକ ସଂଗ୍ରହ କରି ଏ ପୁସ୍ତକ ସଂପାଦନା କରା ଯାଇଛି । ସମସ୍ତଙ୍କୁ ସାଧୁବାଦ ।

୧୪ ।୦୨ ।୧୪
ମାଘ ପୂର୍ଣ୍ଣିମା

ଡକ୍ଟର ଶ୍ରୀଚରଣ ମହାନ୍ତି
ଶ୍ରୀ ପୀତବାସ ରାଉତରାୟ
*ସଂକଳକ*

## ।। ଶ୍ରୀ ଶ୍ରୀ ଜଗନ୍ନାଥାଷ୍ଟକ ।।

କଦାଚିତ୍ କାଳିନ୍ଦୀତଟ-ବିପିନ-ସଙ୍ଗୀତକରବୋ
ମୁଦାଭୀରୀ-ନାରୀ-ବଦନକମଳାସ୍ୱାଦ-ମଧୁପଃ
ରମା-ଶମ୍ଭୁ-ବ୍ରହ୍ମାସୁରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୧ ।

ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପୁଚ୍ଛଂ କଟୀତଟେ
ଦୁକୂଳଂ ନେତ୍ରାନ୍ତେ ସହଚରକଟାକ୍ଷଂବିଳସୟନ୍
ସଦା ଶ୍ରୀମଦ୍‌ବୃନ୍ଦାବନ ବସତି ଲୀଳା-ପରିଚୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୨ ।

ମହାମ୍ଭୋଧେସ୍ତୀରେ କନକରୁଚିରେ ନୀଳଶିଖରେ
ବସନ ପ୍ରସାଦାନ୍ତେ ସହଜ ବଳଭଦ୍ରେଣ ବଳିନା
ସୁଭଦ୍ରାମଧ୍ୟସ୍ଥାଃ ସକଳସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୩ ।

କୃପା ପାରାବାରଃ ସଜଳଜଳଦଶ୍ରେଣୀରୁଚିରୋ
ରମାବାଣୀରାମଃ ସ୍ଫୁରଦମଳପଦ୍ମେକ୍ଷଣମଖୈଃ
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖାଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୪ ।

ରଥାରୂଢ଼ୋ ଗଚ୍ଛନ୍ ପଥି ମିଳିତ ଭୂଦେବ ପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ଣ୍ୟ ସଦୟଃ
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତୟା
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୫ ।

ପରଂବ୍ରହ୍ମାପୀଡ଼ଃ କୁବଳୟଦଳୋତଫୁଲ୍ଲନୟନୋ
ନିବାସୀ ନୀଳାଦ୍ରୀ ନିହିତଚରଣୋଽନନ୍ତଶିରସି
ରସାନନ୍ଦୋ ରାଧାସରସବପୁରାଲିଙ୍ଗନ ସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୬ ।

ନ ବୈ ଯାଚେ ରାଜ୍ୟଂ ନ ଚ କନକମାଣିକ୍ୟ ବିଭବଂ
ନ ଯାଚେଽହେଂ ରମ୍ୟାଂ ସକଳଜନକାମ୍ୟାଂ ବରବଧୂମ୍
ସଦା କାଳେ କାଳେ ପ୍ରଥମପତିନା ଗୀତ ଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୭ ।

ହରତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ
ହରତ୍ୱଂ ପାପାନାଂ ବିତତିମପରାଂ ଯାଦବପତେ
ଅହୋ ଦୀନନାଥୋ ନିହିତମଚଳଂ ନିଶ୍ଚିତପଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୮ ।

ଜଗନ୍ନାଥାଷ୍ଟକଂ ପୂଣ୍ୟଂ ଯଃ ପଠେତ୍ ପ୍ରୟତଃଶୁଚିଃ
ସର୍ବପାପବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସ ଗଚ୍ଛତି ॥



# ସୂଚିପତ୍ର

# ପ୍ରଭୁ ମାନ ଉଦ୍ଧାରଣ

## ସାରଳା ଦାସ

ଜୟ ନୀଳାଚଳ ନାଥ ଅଗତି ତାରଣ ।
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ ॥

ଆହେ କଳାକର ମୁଖ ପାଣ୍ଡବ ରକ୍ଷକ ।
ସେ ମୁଖ ଦର୍ଶନେ ପାପ ନ ରହଇ ପାଖ ॥

ବଡ଼ ଦେଉଳେ ବସିଛ ହୋଇ ବକ୍ର ସେହ୍ନା ।
ପତିତପାବନ ବୋଲି ଉଡ଼ାଇଛ ବାନା ॥

ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ ।
ଅଜାମିଳ ଠାରୁ ମୁଁ କି ଅଟଇ ଅଧମ ॥

ତାହାକୁ ତାରିଲ ପ୍ରଭୁ କଟାକ୍ଷ ମାତ୍ରାରେ ।
ସେହିପରି ଦୃଷ୍ଟି ପଡୁ ମୋ ଉପରେ ଥରେ ॥

ବାଟ ଖରଚକୁ ମୋର କିଛି ନାହିଁ ଧନ ।
ତିମ୍ଭେ ହିଁ ସମ୍ବଳ ମୋର ରଙ୍କର ରତନ ॥

ଅଣଚାଶ ବେଳକୁ ଭରସା କେହି ନାହିଁ ।
ତୁମ୍ଭେ ଉଦ୍ଧାରନ୍ତା ଅଟ ପ୍ରଭୁ ଭାବଗ୍ରାହୀ ॥

ଇଚ୍ଛାମୟ ହରି ତୁମ ମହିମା ଅସୀମ ।
ଦୁବଗଛ କରିପାର ଭୟଙ୍କର ଦ୍ରୁମ ॥

ତୁମ୍ଭର କୃପାରେ ପଙ୍ଗୁ ଲଙ୍ଘିପାରେ ଗିରି ।
ତୁମ୍ଭର ବଳେ କପିଏ ଗଲେ ସିନ୍ଧୁ ତରି ॥

ତୁମ୍ଭ ମହିମା ବର୍ଣ୍ଣନେ ଅଛି କା ଶକତି ।
ସାରଳା ଦାସ ମାଗଇ ହେ ପ୍ରଭୁ ମୁକତି ॥



# ଜୟ ହେ ନୀଳସୁନ୍ଦର

## ସାରଳା ଦାସ

ଜୟ ହେ ନୀଳସୁନ୍ଦର ପୁରୁଷ ଉତ୍ତମ,
ବ୍ରହ୍ମ ରୁଦ୍ର ଅବତାର ତୁମ୍ଭେ ପୂର୍ଣ୍ଣ ବ୍ରହ୍ମ ।

କଳିକାଳ ନିବାରଣେ ନୀଳାଚଳେ ବିଜେ,
ନବକୋଟି ତୀର୍ଥ ଘେନି ପୁଷ୍କର ଯେ ପୂଜେ ।

ପରମ ପୁରୁଷ ନାଥ ଅଟୁ ମହାଯୋଗୀ,
ଜନ୍ମେ ଜନ୍ମେ ଭାବଇ ମୁଁ ତବ ପଦ ଲାଗି ।

ଶ୍ୱେତ ପୀତ କୃଷ୍ଣବର୍ଣ୍ଣ ତିନୋଟି ମୂରତି,
ସତ୍ତ୍ୱ ରଜ ତମୋଗୁଣ ହୋଇ ବିରାଜନ୍ତି ।

ମଧ୍ୟରେ ବହ୍ମ ଧରିଣ ସୁଭଦ୍ରାର ରୂପ,
ରଜୋଗୁଣେ ଜଗନ୍ନାଥ ସୁନ୍ଦର ସ୍ୱରୂପ ।

ଦୟା ଭାବ ଆପଣଙ୍କ ସାଗର ସମାନ,
ଶାନ୍ତଭାବେ ଭକ୍ତେ ତାରି ଖଣ୍ଡ ପାପମାନ ।

କ୍ଷମା ଗୁଣରେ ଆପଣ ସହିଷ୍ଣୁ ଅଟନ୍ତି,
ଭକତଙ୍କ ପାଇଁ ପ୍ରଭୁଙ୍କର ନାନା ମୂର୍ତ୍ତି ।

ତୁମ୍ଭର ଚରଣେ ଦେବ ନିତ୍ୟ ମନ ରହୁ,
ତୁମ୍ଭ ନାମ ଘୋଷି ଘୋଷି ପିଣ୍ଡୁ ପ୍ରାଣ ଯାଉ ।

ନୀଳଗିରିର ମହିମା ବର୍ଣ୍ଣନେ କି ଶକ୍ତି,
ସବୁ ଦେବ ତୀର୍ଥ ଆଦି ଯହିଁ ବିରାଜନ୍ତି ।

ନିଜ କନ୍ୟା ସମର୍ପଣ କରି ବାରିନିଧି
ସପତ ସମୁଦ୍ର ଘେନି ଖଟେ ନିରବଧି ।

ବାସୁକୀ ସହିତେ ଅଷ୍ଟକୁଳା ନାଗେ ଛନ୍ତି,
ସଦା ପୂର୍ଣ୍ଣ ରହି କ୍ଷୀରସିନ୍ଧୁ ନ ଲଂଘନ୍ତି ।

ବାଳକାଳେ ତୁମ୍ଭ ବତ୍ସା ହରିଥିଲେ ବ୍ରହ୍ମା,
ତାହାଙ୍କର ଦୋଷ ପ୍ରଭୁ କରିଥିଲେ କ୍ଷମା ।

ଜନ୍ମେ ଜନ୍ମେ ଦାସ ମୁହିଁ ତୁମର ଅଟଇ,
ତେଣୁ କରି ଶ୍ରୀଚରଣେ ସର୍ବଦା ଖଟଇ ।

ମ ର ତାର ଯାହା କର ତୁମ୍ଭ ପାଦ ଆଶ୍ରା,
ତୁମ୍ଭେ ହିଁ ମୋହର ପ୍ରଭୁ ସକଳ ଭରସା ।



# ମୁଁ ଶ୍ରୀ ଜଗନ୍ନାଥଙ୍କର ବେଟା

## ବଳରାମ ଦାସ

ପୂର୍ବେ ଯେ ଦିବା ନିଶି ସାତଦିନ ବରଷି
ପ୍ରଭୁଙ୍କ ତୁଲେ ବାଦ କଲୁ
ବାର ଯୋଜନ ଗିରି ବାମ କରେଣ ଧରି
ହାରିଣ ଶରଣ ପଶିଲୁ ।୧ ।

ବାସବ ହେ, ସେ ରୋଷେ ଭାଙ୍ଗୁ ଆମ ଘର
ଯେତେ ନ ଜାଣୁ ବାଇ ସଙ୍ଗେ ନ ପାରୁ ରହି
ଜଣାଇଲେ ପ୍ରଭୁଙ୍କ ଛାମୁର । ୨ ।

ଗୁରୁ ପଞ୍ଚମୀ ବ୍ରତ କରି ଯେ ଥିଲୁ ସତ୍ୟ
କରି ତା ପାଳି ନ ପାରିଲୁ
ଲକ୍ଷ୍ମୀଙ୍କ କୋପଭର ଡରେଣ ଥରହର
ଜାଣୁତ କେମନ୍ତ ହୋଇଲୁ ।୩ ।

ରାବଣ ପୁଅ ମେଘା ଜିଣିଲା ତୋତେ କ୍ଷପା
ତେଣୁ ତା ନାମ ଇନ୍ଦ୍ରଜିତ
ତୋହର ପାଇଁ ହରି ବେଗେ ତାହାନ୍ତ ମାରି
ସେ ଗୁଣ କରିଛୁ ଆସ୍ତନ୍ତ । ୪ ।

ପାରିଜାତକେ ଆଣୁ ମୁଣ୍ଡ ତୋ ହାଣୁ ହାଣୁ
ସେ ବେଳେ ରଖିଲେ ତୋ ପ୍ରାଣ

* * * * * * * * *

ବେଳେକ ହେ ସହିବା ପ୍ରଭୁଙ୍କୁ ନ କହିବା
ତୁହିତ ସ୍ୱର୍ଗେ ଇନ୍ଦ୍ର ଗୋଟା
ଭଣେ ବଳରାମ ଦାସ ତୋଳାଇବା ନୂଆ ଉଆସ
ମୁଁ ଶ୍ରୀ ଜଗନ୍ନାଥଙ୍କର ବେଟା ।୫ ।



# ସଖି ଚାହାଁ ଗୋ

## ବଳରାମ ଦାସ

ସଖି ଚାହାଁ ଗୋ, ହସ ହସ ହେଉଛନ୍ତି ନାହା ଗୋ
ବେଦ ଲଗନେ କହିଛି ଯାହା ଗୋ
ନିଘୋଡ଼ କରି ଭୁଜ ଧରି ନେଉଛନ୍ତି
ଏହାଙ୍କର କେହି ନାହାନ୍ତି କି ସାହା ଗୋ । ଘୋଷା ।

ସଖି ଗୋ ଜାଣିଲା ମୋ ପ୍ରଭୁ ଜଗତ ଖାତେକ
ତାଙ୍କୁ ଲୋକେ  ନେଉଛନ୍ତି ଧରି
ପାହିବାକୁ ରାତ୍ର ପହଡ଼େକ ଥାଉଁ
ସେ ହରିଲେ କାହାର ନାରୀ ଗୋ । ୧ ।

ସଖି ଗୋ ବିଭା ହୋଇଲାର ପ୍ରାୟେକ ଦିଶନ୍ତି
ଅଣ୍ଟାରେ ପାଟର ଡୋର
ଚକ୍ର ଆକାରରେ ସେବକେ ବେଢ଼ିଛନ୍ତି
ଆବୋରି ତାକି ଛାମୁର । ୨ ।

ସଖି ଗୋ ପୂର୍ବେ ରାଜଜେମା ଚୋରାଇ ଆଣିଲେ
ତାକି ଚର ଭେଟାଇଲେ ଆଣି
ବଳରାମ ଦାସ ତା ଦେଖି ଉଷତ
ଧରି ନେଲେଟି ତିନି ପରାଣୀ  ଗୋ । ୩ ।



# ଦୀନ ବାନ୍ଧବ ହେ

## ବଳରାମ ଦାସ

ଦୀନ ବାନ୍ଧବ ହେ, ମୋ ଦୁଃଖ ନ ଗଲା ଯେ
ତୁମେ ଦୀନବନ୍ଧୁ ମୋତେ ପାଶୋରିଲେ
ମୋ ବନ୍ଧୁ ହୋଇବ କିଏ । ।ପଦ ।
ତୁଳସୀର ମାଳ ତୁଳସୀର ଚୂଳ
ତୁଳସୀ ମଥାରେ ଦେଇ
ତୁଳସୀ ଚଂ.ରା ମୂଳେ ଅନାଇଲେ
ନୀଳଚକ୍ର ଦିଶୁଥାଇ । ୧ ।

ଚୂଳର ଉପରେ ସେବତୀର ଗଭା
ଦେଖିଲେ ମାଡ଼ଇ ଭୟେ
ଦୀନବନ୍ଧୁ ଠାରେ ବିପତ୍ତି ନ ଥାଇ
ଯେଣେ ଯାଉଥିଲେ ଜୟେ । ୨ ।

ଦୀନବନ୍ଧୁ ବୋଲି ଯାହାକୁ ବୋଲନ୍ତି
ସେହି ସେ ପରମ ଯୋଗୀ
ଯୋଗୀମାନଙ୍କର ଆତଙ୍କ ନାଶନ
ଦୁଃଖୀମାନଙ୍କର ଭୋଗୀ । ୩ ।

ଆଦି ଅନାଦିରେ ବନ୍ଧନ ପଡ଼ିଛି
ମାୟା ମୋହ ଲାଗି ଧନ୍ଦ
ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ଯାଉଛି
ପଞ୍ଜୁରୀ ପଡ଼ିବ ବନ୍ଦ । ୪ ।

ଏ ଭବ ସାଗରୁ ତରିବା ନିମନ୍ତେ
ପଥର ବାନ୍ଧିଛ ଭେଳା
ତୁମେ ନ ରଖିଲେ ଭାସି ମୁଁ ଯାଉଛି
ରଖ ରଖ ଚକାଡ଼ୋଳା । ୫ ।

ଭଗତ ଭାବରୁ ପ୍ରସନ୍ନ ହେବାରୁ
ଭାବ ବିନୋଦିଆ ଯେଣୁ
ବଳରାମ ଦାସ ଅନ୍ନ ନ ମାଗଇ
ମାଗଇ ଚରଣ ରେଣୁ ।୬ ।



# ଶ୍ରୀ ଜଗନ୍ନାଥଙ୍କ ଭାରତଲୀଳା ଜଣାଣ

## ବଳରାମ ଦାସ

(ରାଗ -ସାବେରୀ, ଚନ୍ଦନପାତିଆ ଭଜନ ବୃତ୍ତେ)

ମହାପ୍ରଭୁ ! ଭକତ ଦୁଃଖରେ ଦୁଃଖୀ;
ରୁଧିରନଦୀ  ସାତତାଳ ମଧ୍ୟରୁ
ଭରତିଆ ପକ୍ଷୀ ରଖି । ଘୋଷା ।

ଭକତ ନିମନ୍ତେ ହସ୍ତିନା ପୁରକୁ
ପଡ଼ା ମାଗିବାକୁ ଗଲ
ବେଢ଼ି କଉରବେ ଯେତେ ଝିଙ୍ଗାସିଲେ
ଭକତ ହିତେ ସହିଲ । ୧ ।

ଦଶ ସହସ୍ର ରଜାଙ୍କର ନିମନ୍ତେ
ଗଧମୁଖେ ଶଙ୍ଖ ଦେଲ
ଭୀମ ହସ୍ତେ ଜରାସନ୍ଧ ବଧ କରି
ବନ୍ଦୀଙ୍କୁ ମୁକୁଳାଇଲ । ୨ ।

ଶରରେ  ସାଗର ବାନ୍ଧି ଧନଞ୍ଜୟ
ମୀନ ରୂପେ ବିଜେ କରି
ଗିରି ଘେନି ହନୁ ଝମକି ଉଠନ୍ତେ
ଶ୍ରୀମୁଖୁଁ ରୁଧିର ଝରି । ୩ ।

ଭୀଷ୍ମକ ଦୁଲଣୀ ରୁକ୍ମଣୀ ଡାକିଲା
ଶିଶୁପାଳ ଅଭିମାନେ

ଲକ୍ଷେରଜା ମୁହେଁ କାଳି ଲଗାଇଣ
ଘେନିଗଲ ଅନ୍ତର୍ଦ୍ଧାନେ ।୪ ।

ଚକ୍ଷୁକୁ ଯେସନେ ପିଛଡ଼ା କଷଣି
ଭକ୍ତକୁ ତେହ୍ନେ ଗୋସାଇଁ
ବଳରାମ ଦାସ ଭାବରେ ଭଣିଲେ
ପ୍ରଭୁପଣେ ଲୁଚିଯାଇ । ୫ ।



# ଶ୍ରୀ ପୁରୁଷୋତ୍ତମ ଯିବା ମନ

## ଜଗନ୍ନାଥ ଦାସ

ଶ୍ରୀପୁରୁଷୋତ୍ତମ ଯିବା ମନ
ତୁନି ହୋଇଥିବା କେହି ନ ଜାଣିମେ
ସାଙ୍ଗ ହୋଇଥିବା ପାଞ୍ଚଜଣ
ବସି ଭାଳୁଥିବା ମନେ ମନେ
ପ୍ରଭୁ ପାଞ୍ଚଜଣ ।୧ ।

ଦାଣ୍ଡକୁ ଫିଟିଛି ସିଂହ ଦ୍ୱାର
କଳ୍ପବଟ ମୂଳେ ଅନନ୍ତ ଶଯ୍ୟାରେ
ବାଇଶି ପାଉଚ୍ଛ ତଲ୍ୟକର
ମୁକତି ମଣ୍ଡପ ବିମ୍ୱାଧର
ପ୍ରଭୁ ଲୟେ କର ।୨ ।

ସାଜିଣି ହୋଇଛି ତିନି ରଥ
ସୁବର୍ଣ୍ଣ କଳସ ଉପରେ ଚିରାଳ
ପାଟ ପତନି ମଣ୍ଡଣି ନେତ
ଫରଫର ଉଡ଼େ ବାନା ନେତ
ପ୍ରଭୁ ତିନି ରଥ । ୩ ।

ଶରଧା ବାଲି କି ଶୋଭାବନ
ରଙ୍ଗ ସଭା ତଳେ କଂସକୁ ମାଇଲେ
ତାଳଧ୍ୱଜରେ କି ବଳରାମ
ରାମକୃଷ୍ଣ ଏହି ବେନିଜନ
ପ୍ରଭୁ ବଳରାମ । ୪ ।

ଏହି ଜଗନ୍ନାଥ ଗୋପପୁରେ
କଂସର କଟକେ ଅଷ୍ଟ ମଲ୍ଲ ମାରି
ବତ୍ସା ରଖିଥିଲେ ନନ୍ଦ ଘରେ
ଗିରି ଟେକିଅଛି ବାମ କରେ
ପ୍ରଭୁ ଗୋପପୁରେ । ୫ ।

ଶ୍ରୀକୃଷ୍ଣ ଚରଣେ ଆଶ କରି
କହେ ଜଗନ୍ନାଥ ଚରଣେ ଶରଣ
ହୃଦେ ବୋଲୁଥାଇ ହରି ହରି
ଆଜ୍ଞା ଦେଉ ପ୍ରଭୁ ନୀଳଗିରି
ପ୍ରଭୁ ଦେବ ହରି । ୬ ।



# ନମସ୍ତେ ପ୍ରଭୁ ଜଗନ୍ନାଥ

## ଜଗନ୍ନାଥ ଦାସ

(ଭାଗବତ ବୃତ୍ତେ)

ନମସ୍ତେ ପ୍ରଭୁ ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ॥
ନମସ୍ତେ ପ୍ରଭୁ ବାସୁଦେବ । ଭକତ ଜନଙ୍କ ବାନ୍ଧବ ॥
ନମସ୍ତେ ପ୍ରଭୁ ହୃଷୀକେଶ । ଭକତ ଜନଙ୍କ ବିଶ୍ୱାସ ॥
ନମସ୍ତେ ପ୍ରଭୁ ବିଶ୍ୱରୂପୀ । ସକଳ ହୃଦେ ଅଛ ବ୍ୟାପୀ ॥
ତୁ ସୃଷ୍ଟି ସ୍ଥିତି ଲୟ କରୁ । ଆବର ଗର୍ଭରେ ସଂହରୁ ॥
ଅଶେଷ କୋଟି ବସୁନ୍ଧରୀ । ତୋହର ଗର୍ଭେଛନ୍ତି ପୁରି ॥
ଚଉଦ ଭୁବନେ ଯା କିଣା । ଏ ସର୍ବ ତୋହର ରଚନା ॥
ତୁ ବ୍ରହ୍ମା ରୁଦ୍ର ବିଷ୍ଣୁ ତୁହି । ତୋ ବିନୁ ଅନ୍ୟଗତି ନାହିଁ ॥
ସୃଷ୍ଟି ତୋହର ଖେଳଘର । ଅଶେଷ ମାୟା ତୋ ଆବର ॥
ତୋହର ନିଃଶ୍ୱାସ ମରୁତ । ଦେବେ ହୋଇଲେ ତହୁଁ ଜାତ ॥
ତୁହିଟି ଅଗ୍ନିଦେବ ଇନ୍ଦ୍ର । ନୟନୁ ଜାତ ସୂର୍ଯ୍ୟ ଚନ୍ଦ୍ର ॥
ଭୁଜରୁ ଅନନ୍ତ ମୂରତି । କଣ୍ଠରୁ ଜାତ ସରସ୍ୱତୀ ॥
ସଦା ଚଞ୍ଚଳ ନିଦ୍ରା ନାହିଁ । ଏ ରୂପେ ଶୂନ୍ୟେ ଅଛୁ ରହି ॥
ଅଶେଷ ତୋହର ମହିମା । କେ ଜାଣିପାରେ ଗୁଣସୀମା ॥
ତୋ ନାମ କରୁଥିଲେ ଲୟ । କୋଟିଏ ଜନ୍ମ ପାପ କ୍ଷୟ ॥

ନାମ ଘୋଷିଲେ ସର୍ବ ସିଦ୍ଧି । ଖଣ୍ଡଇ ରୋଗ ଶୋକ ଆଦି ॥
ଆରତ ଭଞ୍ଜନ ତୋ ବାନା । ଆତଙ୍କ କାଳେ ବଜ୍ର ସେହ୍ନା ॥
ହୋଇଲୁ ଦଶ ଅବତାର । ନାଶିଲୁ ଅବନୀର ଭାର ॥
ଦୁଷ୍ଟ ନିବାରି ସନ୍ଥ ପାଳୁ । ତୁ ନାଥ ପରମ ଦୟାଳୁ ॥
ତୁ ଅଟୁ ଦରିଦ୍ରଙ୍କ ଧନ । ତୋ ପଦେ ରହୁ ମୋର ମନ ॥
ସତୀ ଯୁବତୀଙ୍କର ମନେ । ନିଜର ସ୍ୱାମୀ ଥାନ୍ତି ଯେହ୍ନେ ॥
ସେହି ପ୍ରକାରେ ମୋର ମନ । ତୋ ପଦେ ରହୁ ଭଗବାନ ॥
କହଇ ଜଗନ୍ନାଥ ଦାସ । କମଳ ଚରଣକୁ ଆଶ ॥



# ଆରେ ବାୟା ସଂସାର ବାସୀ

## ଅଚ୍ୟୁତାନନ୍ଦ ଦାସ

ଆରେ ବାୟା ସଂସାର ବାସୀ
ନୀଳାଚଳ ଲୀଳା ଦେଖିଯା ଆସି ।

ଦିନେକ ଦେଖିଲେ ପାଶୋର ନ ଯିବ
ମନ ବଳୁଥିବ ବେଶିକି ବେଶି । ଘୋଷା ।
ଯେହୁ ଲୀଳା ସତ୍ୟରେ ଥିଲା
ଅନନ୍ତ ତାହାକୁ ରଖିଲା ।

ସେହି ଅନନ୍ତକୁ ହକାରିଣ ପ୍ରଭୁ
ଲୀଳା ବେହାରକୁ ହେଲେ ଉଦେଶି । ୧ ।

ଅନନ୍ତ ଯେ ଯୁଗ ହୋଇବ
ମାଧେବଙ୍କ ଶିରେ ଶୋହିବ

ଅନନ୍ତ ମାଧେବ ଲୀଳା ଦେଖିବାକୁ
ସିଧେଗିରି 'ପୀଠେ ରହିଛି ବସି । ୨ ।

ଅଜାଣତା ଅନନ୍ତା କଥା
ସପ୍ତଫଣୀ ଧରିଛି ମଥା

ନିଶ୍ୱାସଘାତରେ ପୃଥ୍ୱୀ କମ୍ପାଇବ
ଥରଥର ହେବ କଳିଙ୍କୀ ଆସି । ୩ ।

ଯୋଗକରି ମାୟାକୁ ଧରି
ଯୋଗମାୟା ଦେବ ହକାରି ।

ଯୋଗୀଜନମାନେ ତା ସଙ୍ଗ କରିଣ
ବୈକୁଣ୍ଠ ପୁରକୁ ଯିବେଟି ପଶି । ୪ ।

ଯୋଗଭ୍ରଷ୍ଟ ସିଧ୍ୟ ଆସନ
ଜଗିଥା ହୋ ସଂସାରଜନ ।

ନ ଜଗିଲେ ଭାଇ ନେବ ମହାମାଈ
ରୋଧିର ପିଇବ ହୋଇଣ ଖୁସି । ୫ ।

ଯେହୁ ସତ୍ୟ ଗୋପ ବାରତା
କଳିକି ଅନନ୍ତ ଦେବତା

ଶିରେ ଧରି ଆଗ୍ୟାଂ ଚଳିବେ ସଳଖା
ଅନାହତ ଘରେ ଯିବେଟି ମିଶି । ୬ ।

ଅଚ୍ୟୁତର ହୋଇବ ଚ୍ୟୁତ
ଯୁଗଫଳ ଭୁଞ୍ଜିବ ସତ ।

ଅମର ଯେ ପଦ ଅମର ଔଷଦ
ସିଧ୍ୟପିଠେ ଯାଇ ଦେଖିବ ବସି । ୭ ।

ସଂସାରରେ ହୋଇବ ସାର
ଦେଖି ସେହି ଅନିତ୍ୟ ପୁର ।

କଟକ ଭୁଖଣ୍ଡେ କେରୁଆଳ ଖଣ୍ଡ
ଧରିଛି ଅଚ୍ୟୁତା ହେଇ ନିବାସୀ । ୮ ।



# ଜୟ ଜୟ ଜଗନ୍ନାଥ

## ଅଚ୍ୟୁତାନନ୍ଦ ଦାସ

ଜୟଜୟ ଜଗନ୍ନାଥ ଜଗତ ଜୀବନ ।
ଜୟଜୟ ଜଗନ୍ନାଥ ପରମ କାରଣ ।୧ ।

ଜୟଜୟ ଜଗନ୍ନାଥ ତୁ ପରମାନନ୍ଦ ।
ଜୟଜୟ ଜଗନ୍ନାଥ ତୁହି ଆଦିକନ୍ଦ । ୨ ।

ଜୟଜୟ ଜଗନ୍ନାଥ ଦୀନଜନ ବନ୍ଧୁ ।
ଜୟଜୟ ଜଗନ୍ନାଥ କୃପାଜଳ ସିନ୍ଧୁ ।୩ ।

ଜୟଜୟ ଜଗନ୍ନାଥ କରୁଣା ବାରିଧି ।
ଜୟଜୟ ଜଗନ୍ନାଥ ଅନାଦି ତୁ ଆଦି ।୪ ।

ଜୟଜୟ ଜଗନ୍ନାଥ ପରମ ପୁରୁଷ ।
ଜୟଜୟ ଜଗନ୍ନାଥ କମଳା ବିଳାସ । ୫ ।

ଜୟଜୟ ଜଗନ୍ନାଥ ନୀଳଗିରି ବାସୀ ।
ଜୟଜୟ ଜଗନ୍ନାଥ ପରଂବ୍ରହ୍ମ ରାଶି । ୬ ।

ଜୟଜୟ ଜଗନ୍ନାଥ ଚତୁର୍ଦ୍ଧା ମୂରତି ।
ଦୀନ ଅଚ୍ୟୁତ ତୋ ଦାସ ସଦା ଦିନରାତି । ୭ ।



# ନୀଳଗିରି ଜଗନ୍ନାଥ

## ଅଚ୍ୟୁତାନନ୍ଦ ଦାସ

ନୀଳଗିରି ଜଗନ୍ନାଥ ଚରଣେ ଶରଣ ।
ଦୀନ ଅଚ୍ୟୁତର ଭବଭୟ ନିବାରଣ । ୦ ।

ନମାମି ଶ୍ରୀ ନୀଳଗିରି ନମୋ ପୁରୁଷୋତ୍ତମ ।
ସକଳ ବେଦ ପୁରାଣେ ପ୍ରଥମେ ତୋ ନାମ ।୧ ।

ନମସ୍ତେ ଶ୍ରୀ ନୀଳାଚଳ ପତି ଜଗନ୍ନାଥ ।
ତୋହରି ପାଦ ପଙ୍କଜେ ଲୋଟୁ ମୋର ମାଥ । ୨ ।

ଜୟ ଜୟ ଜଗନ୍ନାଥ ନୀଳଗିରୀ ବାସୀ ।
ଜୟଜୟ ଜଗନ୍ନାଥ ପରଂବ୍ରହ୍ମ ରାଶି । ୩ ।

ମହୋଦଧି ତୀରେ ନୀଳ କନ୍ଦର ଉପରେ ।
ବିଜେ ହୋଇଅଛ ପ୍ରଭୁ ଚତୁର୍ଦ୍ଧା ରୂପରେ । ୪ ।

ସୁଦର୍ଶନ ବଳଭଦ୍ର ଶ୍ରୀହରି ସୋଭଦ୍ରା ।
ଚତୁର୍ଦ୍ଧା ମୂରତି ରୂପେ ହେଲ ଯୋଗମୁଦ୍ରା । ୫ ।

ଅଷ୍ଟାଙ୍ଗ ଯୋଗ ସମ୍ଭୁତ ପରଂ ଗ୍ୟାନ ମଏ ।
ଯହିଁରେ କୈବଲ୍ୟ ମୁକ୍ତି ହୋଇଛି ଉଦଏ । ୬ ।

ବୌଦ୍ଧ ରୂପ ଧରି ନାଥ ମଉନେ ବସିଛ ।
ଅରୂପାନନ୍ଦ ମୂରୁତି ଭଗତେ ତାରୁଛ । ୭ ।

ପାଦ ପାଣି ନାହିଁ ନାସା କର୍ଣ୍ଣ ଗୁପ୍ତ କରି ।
ପରଂବ୍ରହ୍ମ ଚିଦାନନ୍ଦ ଲୀଳା ଅଛ ଧରି । ୮ ।

ନୀଳାଞ୍ଚଳେ ଲୀଳାମାନ ଲଗାଇ ଗୋସାଇଂ ।
ତିନି ରୂପ ପ୍ରକାଶିଛ କଳିଯୁଗ ପାଇଂ । ୯ ।

କଉଂ ରୂପ ଧ୍ୟାଇ ତୋର କରିବି ଜଣାଣ ।
ମୁକତି ଲାଗି ଅଚ୍ୟୁତି ପଶିଲା ଶରଣ । ୧୦ ।



# ଏହି ମନ ସିନା ଚତୁର୍ଦ୍ଧା ମୂରତି

## ଅଚ୍ୟୁତାନନ୍ଦ ଦାସ

ଏହି ମନ ସିନା ଚତୁର୍ଦ୍ଧା ମୂରତି ହେ, ମୂଢ଼ମତି ! ॥ ପଦ ॥

ମନ କହେ ଚଇତନ,
ହେତୁରେ ଦେଖତୁ ବ୍ରହ୍ମ
ଯେ ତତ୍ତ୍ୱ ଚାରି ବେଦେଣ,
ଦଣ୍ଡିବ ନାହିଁ ଶମନ,
ସନକାଦି ମୁନି ଧ୍ୟାଉଛନ୍ତି, ହେ ମୂଢ଼ମତି ! ॥୧ ॥

ନ ଖୋଳ ତଡ଼ାଗ କୂପ
ଦେଉଳ ତୋଟା ନ ରୋପ
ସ୍ଥାପନା ଦିଅଁ ନ ସ୍ଥାପ
ନ ଯା ବୃନ୍ଦାବନ ଗୋପ
ନ ଯା ତୁହି ପ୍ରୟାଗ ଗୋମତୀ, ହେ ମୂଢ଼ମତି ! ॥ ୨ ॥

ଯେ ଜ୍ଞାନ ହୃଦେ ନ ଧର
ତିଳକ ମାଳା ନ କର
ଜଟା କୌପୁନି ନ ଧର
ଭସ୍ମ ଅଙ୍ଗୁ ପରିହର
ଗଙ୍ଗାକୂଳେ ନାହିଁ ସଦଗତି, ହେ ମୂଢ଼ମତି ! ॥ ୩ ॥

ଆତ୍ମାକୁ ଆତ୍ମାରେ ଦେଖ
ଦେଖିଲେ ପାଇବୁ ସୁଖ
ତୋର ଦେହେ ତୁହି ଦେଖ
ଦିଶୁଅଛି ଜକଜକ
ଭାବି କହେ ପାମର ଅଚ୍ୟୁତି ହେ ମୂଢ଼ମତି ! ॥ ୪ ॥



# ଅନନ୍ତ ରୂପୀ ଭାବଗ୍ରାହୀ

## ଶିଶୁ ଅନନ୍ତ ଦାସ

ଶ୍ରୀନୀଳଗିରି କ୍ଷେତ୍ରଧାମ । କହିବା ହେବ ଅନୁପମ ।।
ଯେ କ୍ଷେତ୍ରବର ଶୁଣ ତୁହି । ବିରାଟ ଶେଷ ଦେବ ହୋଇ ।।

ଯେ ବଟପୁଟ ଅଛି ତହିଁ । ତା ମାୟା ଅନ୍ତ କରି ନୋହି ।।
ଯୋଗମାୟାଟି ତାର ନାମ । ସେ ବଟ ଶିଖେ ନାରାୟଣ ।।

ତେଣୁ ନୀଳାଦ୍ରି ନାମ ବହି । ଅନନ୍ତ ରୂପୀ ଭାବଗ୍ରାହୀ ।।
ପଞ୍ଚୁ ଯେ କୋଶ ପଞ୍ଚଜନ୍ୟ । ଶଙ୍ଖ ମଧ୍ୟରେ ପଞ୍ଚ ପୁଣ ।।

ପଞ୍ଚ ଆତ୍ମିକ ଯେ ବୋଲଇ । ଶୁଣ ସୁମନେ ସୁତ ତୁହି ।।
ଶିଶୁ ବେଦ ଯେ ନୀଳ ସରି । ତେଣୁ ଯେ ନାମ ନୀଳଗିରି ।।

କରୁଣା ଶବଦ ବହଇ । କରୁଣା ସିନ୍ଧୁ ସେ ବୋଲାଇ ।।
ସିନ୍ଧୁ କୂଳେ ବିଜେ ଗୋବିନ୍ଦ । ସେ ପୁର ହରଷ ଆନନ୍ଦ ।।

ପରମ ପୁରୁଷ ଦେଉଳ । ନୀଳ ଚକ୍ର ଯେ ଶୂନ୍ୟ ଠୁଳ ।।
ନେତ୍ର ଯେ ବ୍ରହ୍ମା ବିଷ୍ଣୁ ହର । ଉତ୍ତୁଣ ଅଛି ଚକ୍ରପର ।।

ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ । ବୁଦ୍ଧ ସ୍ୱରୂପେ ବିହରଇ ।।
ମାୟାକୁ ଦିଶଇ ସ୍ୱରୂପ । ସକଳ ରୂପ ଯହିଁ ଗୋପ୍ୟ ।।

ଅରେଖ ଅରୂପ ଅଚୂତ । ଅକ୍ଷୟ କ୍ଷର ସର୍ବ ଜାତ ।।
ଏମନ୍ତ ନୀଳାଦ୍ରି ମହିମା । ଦେବାକୁ ନାହିଁ ନା ଉପମା ।।

ପୁରୁଷ ମାନଙ୍କ ଉତ୍ତମ । ନାମ ତା ଶ୍ରୀପୁରୁଷୋତ୍ତମ ।।



# ଜଗନ୍ନାଥ ଜଗତ ଧାରଣ

## ଯଶୋବନ୍ତ ଦାସ

ଜୟ ଜୟ ଜଗନ୍ନାଥ ଜଗତ ଧାରଣ ।
ଜୟ ବଳଭଦ୍ର ଭଦ୍ରା ଜୟ ସୁଦର୍ଶନ ॥ ୧ ।

ଜୟ ଉତପତ୍ତି ସ୍ଥିତି ଯାହାଠାରୁ ହୋଏ ।
ଜଗନ୍ନିବାସ ବୋଲନ୍ତି ସ୍ମୃତି ଯାହା ରାଏ ॥ ୨ ।

ଗୁରୁ ଉପଦେଶ ମାର୍ଗେ ଶିବ ଯେ ପ୍ରକାଶ ।
ଗୁରୁ ଆତ୍ମା ନିକେତନ ଚରଣେ ମୋ ଆଶ ॥୩ ।

ଗାଢ଼ତର ଅପରାଧ ହୋଇବାରୁ ମୋର ।
ଗତିକର ଦୁର୍ଗତିରୁ ଶଙ୍ଖ ଚକ୍ରଧର ॥ ୪ ।

ନାସ୍ତି ନୋହିବଟି ଅସ୍ତି ସଦା କୃପାପଣ ।
ନୋହୁ ନିରାଶ ଦାସରେ ଏହିଟି ଜଣାଣ ॥୫ ।

ନାମରେ ସଦା ଆଶ୍ରିତ ଅଟନ୍ତି ଯେ ଭକ୍ତ ।
ନିଶ୍ଚୟରେ ତାଙ୍କ ସଙ୍ଗେ ମିଳିକର ଭକ୍ତ ॥ ୬ ।

ଥବିର ଭାବ ନାହିଁମୋ ଥୟ ନୋହେ ମତି ।
ନିସ୍ତାର ହୋଇବା ପାଇଁ ବଳିଛି ମୋ ପ୍ରୀତି ॥ ୭ ।

ଲାଭ ଏହି ଦିଅ ଆହେ ଗଦାପଦ୍ମଧାରୀ
ନୋହୁ ବିଘ୍ନ ମାନସରେ ଅଛି ଯା ବିଚାରୀ ୮ ।



# ଧୂପ ଅବକାଶ

## ଯଶୋବନ୍ତ ଦାସ

ଦିବସ ଶେଷ କାଳେ          ରଜନୀ ଆଦ୍ୟ ବେଳେ
ଜଗମୋହନେ ଥାଇ  ଦେଖ

କଳାଭ୍ର ମୁଖ କାନ୍ତି          ଅଧରେ ରଙ୍ଗ ଜ୍ୟୋତି
ଦ୍ରଶନେ ଦୂରିତ ଉପେଖ ॥ଘୋଷା ॥

ମନାଇଂ ହୋ,ଦୀପ ଦଉଡ଼ି ଜଗହୁଳା

ଧୂପକପୁର ବାସେ          ଚନ୍ଦ୍ର ଉଦିଆ ତ୍ରାସେ
ସୁନ୍ଦରଭ୍ର ମୁଖ ସୁଢ଼ଳା ॥ ୧

ଅମର ବୃନ୍ଦ ଘେନି          ଇନ୍ଦ୍ର ଆଦିତ୍ୟ ବ୍ରହ୍ମା
ଚନ୍ଦ୍ର ପବନ ଦିଗପାଳ

ତ୍ରିଦଶ ଦେବଲୋକେ          ଚାମର ଯନ୍ତ୍ର ଧରି
ଶ୍ରୀଜଗମୋହନେ ଚହଳ

ମନାଇଂ ହୋ,ଧୂପ ଗହଳେ ପେଲାପେଲି

ସାଗର ଘୋଷ ଜିଣି          ମୁଖ ରାବ ଶବଦ
ହରି ଶବଦ ବୋଲାବୋଲି ॥ ୨

କାଳିନ୍ଦୀହ୍ରଦେ କି ଯେ        ଶୁକଳ ପଦ୍ମ ବେନି
ଯେ ନାସା ଲକ୍ଷେ ନ ବର୍ଣ୍ଣନ

ପାଟେ ଚୁମ୍ବନ୍ତି କିଯେ        ମତ୍ତ ଭ୍ରମର ବେନି
ତେସନେ ଚକୋର ଲୋଚନ

ମନାଇଂ ହୋ, ବିବିଧ କୁସୁମରେ ଗଭା

ନୀଳନ୍ଦୀ ମେଘେ କି ଯେ        ଶୁକ୍ର ଉଦିତ ଜାଣି
ଶେତ ଧବଳ ଚିତା ଶୋଭା ॥ ୩

ଦେବଙ୍କ ସଙ୍ଗେ ସୁରେ        ସୁରଙ୍କ ସଙ୍ଗେ ନରେ
ଦେଖନ୍ତି ଧୂପ ଅବକାଶ

ନଦେଖି ଦେଖିଲାକି        ଦେଖି ମିଶିଲା ପ୍ରାୟେ
କହନ୍ତି ଯଶୋବନ୍ତ ଦାସ
ମନାଇଂ ହୋ,ତିନି ଧୂପରେ ଯେହ୍ନୁ ସାର

କେ କହି ପାରିବ ଯେ        ଶ୍ରୀ ଜଗନ୍ନାଥଙ୍କ ଲୀଳା
ବ୍ରହ୍ମାରୁଦ୍ରଙ୍କୁ ଅଗୋଚର ॥ ୪



# ଜଗୁ ଜୀବନ ଶ୍ରୀହରି

## ମାଧବୀ ଦାସୀ

(ରାଗ-ସାବେରୀ ବା ବଙ୍ଗଳାଶ୍ରୀ, ଚନ୍ଦନଯାତିଆ-ବୃତ୍ତ)

ଚକା ନୟନ ହେ! ଜଗୁ ଜୀବନ ଶ୍ରୀହରି ।
କାତରେ ଜଣାଣ କରୁଛି ଛାମୁରେ
ଶୁଣ ପ୍ରଭୁ ଶ୍ରୁତି ଡେରି । ଘୋଷା ।

କେତେ ସଂକଟୁ କାହାକୁ ରଖିନାହଁ
ଦୟାଳୁ ସାରଙ୍ଗଧାରୀ ।
ତା ବର୍ଣ୍ଣ ବସିଲେ ପୋଥିକର ପାଠ
କି ବର୍ଣ୍ଣିବ ଏ ପାମେରୀ । ୧ ।

ଅହଲ୍ୟା ତାରଣ ଦ୍ରୌପଦୀ କଷଣ
ହେଲେ ଦେଇଛ ନିବାରି
ମୃଗୁଣୀ ଆରତ ଜାଣି ଜଗନ୍ନାଥ
ବିପଦୁ ଦେଲ ଉଦ୍ଧାରି । ୨ ।

ଶବରୀକି ଦିବ୍ୟ ଗତି ଯାଚି ଦେଲ
ତା ଉଚ୍ଛିଷ୍ଟ ଭକ୍ଷିକରି ।
ମୀରା କରମାଙ୍କ ଭାବେ ହୋଇ ରଙ୍କ
ସ୍ଥାନ ଦେଲ ବ୍ରଜପୁରୀ । ୩ ।

## ୨୬ ଭାବକୁ ନିକଟ ସେ ...

ଜୀବନ୍ତୀ ପିଙ୍ଗଳା ଆଦି ବାରବାଳା
ସଂସାରୁ ଗଲେ ନିସ୍ତରି
ଅପାର ମହିମା କେତନ ଉଡ଼ାଇ
ରଖିଛ କୀରତି ଶିରୀ । ୪ ।
ମୁଁ ଛାର ନିର୍ମାଖୀ ତୁମ୍ଭର ସେବକୀ
ପଣକୁ ଅଯୋଗ୍ୟ ନାରୀ
କରୁଛି ଦଇନି ଯୋଡ଼ି କର ବେନି
ଶୁଣ ମାଧବୀ ଗୁହାରି । ୫ ।



# ଜଗବନ୍ଧୁ ହେ ଗୋସାଇଁ

## ସାଲବେଗ

ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ । ୦ ।

ସାତଶ ପଞ୍ଚାଶ କୋଶ
ଚାଲି ନ ପାରଇ
ମୋହ ଯିବା ଯାଏ ନନ୍ଦି
ଘୋଷେ ଥିବ ରହି ।୧ ।

ରଥ ଚାରିପାଶେ ଲମ୍ବେ
ମୁକୁତାର ଝରା
ଝଲମଲ ଦିଶୁଥାଇ
ପ୍ରଭୁ ଚକାଡ଼ୋଳା । ୨ ।

ବାଇଶ ପାବଛ୍ଛ ତଳେ
ବିକାହୁଏ ଭାତ
ଦର୍ଶନ ତେଣିକି ଥାଉ
କୈବଲ୍ୟ ମୁକତ । ୩ ।

ଆଗେ ଚାଲେ ବଳଭଦ୍ର
ମଧ୍ୟେ ଚାନ୍ଦମୁହାଁ ରେ
ଆସୁଛି କାଳିଆ ପଛେ
ଗହଳ ଲଗାଇ ରେ ।୪ ।

କହେ ସାଲବେଗ ହୀନ
ଜାତିରେ ଯବନ
ଏହି ମତେ ଆଜ୍ଞା ହେବ
ଶିରୀ ବୃନ୍ଦାବନ । ୫ ।



# ଆହେ ନୀଳଗିରି

## ସାଲବେଗ

(ରାଗ-କମ୍ବୋଜୀ)

ଆହେ ନୀଳଗିରି !
ତୁମ୍ଭ ଶ୍ରୀଭୁଜେ ଦୟଣା କେରି କେରି ॥ ଘୋଷା ॥

ତୁଳସୀ ଚଉରା ପାଶେ ଜଗି ବସି ଧ୍ୟାଉଛନ୍ତି କେତେ ଯୋଗୀ
ବ୍ୟାଘ୍ର ଚର୍ମପାତି ସ୍ତୁତି କରୁଛନ୍ତି
ଜପୁଛନ୍ତି ନାମ ସଂଖ୍ୟା କରି ॥ ୧ ॥

ବଡ଼ ଦାଣ୍ଡେ ଦେଖି ହେଲି ତୋଷ ରେଣୁ ମାତ୍ର ତେଣୁ କଲିଗ୍ରାସ
କ୍ଷୀରି ଖେଚଡ଼ିରେ ମନ ନ ବୋଧଇ
ଟଙ୍କ ତୋରାଣିରେ ମନ ତୋଷ ॥୨॥

ସିଂହଦ୍ୱାରେ ବାଜେ ବେତବାଡ଼ି ବାଜନ୍ତେ ପାତକ ଯାଏ ଛାଡ଼ି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତେ
ଏକକୁ ଆରେକ ହୁଡ଼ା ହୁଡ଼ି ॥୩ ॥

ବାଇଶି ପାବଚ୍ଛେ ଗଲି ସୁଖେ କୈବଲ୍ୟ ପସରା ବେନି ପାଖେ
ଚଣ୍ଡାଲୁ ବ୍ରାହ୍ମଣ ଶୁଦ୍ର ପରିଯନ୍ତେ
କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ॥୪ ॥

ରୋହିଣୀ ପାଦୁକା କୁଣ୍ଡ ରଜ ସିଂହ ମାଡ଼ି ବସିଅଛି ଗଜ
ସତେକି ଏ ଜନ୍ମ ସୁଫଳ ଲଭିବ
କାକ ପଡ଼ି ହେଲା ଚତୁର୍ଭୁଜ ॥ ୫ ॥

ଗରୁଡ଼ ପଛରେ ରହି ଦେଖ  କି ଶୋଭା ପାଉଛି ପଦ୍ମମୁଖ
ହୀରା ନୀଳା ମୋତି ମାଣିକ୍ୟ ଝଲୁଛି
ହୃଦେ ଲମ୍ବିଅଛି ବ୍ୟାଘ୍ର ନଖ ॥ ୬ ॥

ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ  ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ଆଣି
କଳା ଶ୍ରୀମୁଖକୁ ବନ୍ଦାଣ କରନ୍ତି
ସାଧୁସନ୍ଥ ଦ୍ୟନ୍ତି ହରି ଧ୍ୱନି ॥ ୭ ॥

କହେ ସାଲବେଗ ହୀନ ଜାତି  ଶ୍ରୀରଙ୍ଗାଚରଣେ ରହୁ ମତି
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି
ଦୟାକର ବାରେ ଲକ୍ଷ୍ମୀପତି ॥ ୮ ॥



# ଚାଲ ସଖି ଆମ୍ଭେ ଦର୍ଶନ କରିବା

## ସାଲବେଗ

ଚାଲ ସଖି ଆମ୍ଭେ ଦର୍ଶନ କରିବା
ନୀଳଗିରି କାଳିଆକୁ
କେଉଁ ସୁଆରପତି ବେଶ କରିଅଛି
ଗିରିବର ତୋଳିଆକୁ
ସେ ଯେ ଶ୍ରୀମୁଖ ତୋରା
ଶିରେ ସୁନା ସୂତା କେରା କେରା ॥୧ ॥

ଶ୍ୱେତ ପଦ୍ମ ଆଖି ଦେଖିଲେ ଗୋ ସଖି
ଚିତ୍ତ କି ବାହୁଡ଼େ ଆଉ,
କର୍ଣ୍ଣରେ କୁଣ୍ଡଳ ଦିଶେ ଝଳ ଝଳ
କଉସ୍ତୁଭ ଦାଉ ଦାଉ
ସେ ଯେ ହିଆ ବୃଷାଳ,
ମିଶାମିଶି ବାରାନିଧି ଫଳ ॥ ୨ ॥

ଶଙ୍ଖ ଚକ୍ର ଗଦା ପଦ୍ମ ମହାପ୍ରଭୁ
ଧରିଛନ୍ତି ଆଣ୍ଡ କରି,
ଦୁଃସହ ଦୁର୍ଗତି ଗ୍ରହ ପୀଡ଼ାମାନେ
ଆଉ କି ପଶିବେ ଡରି ।
ସେ ଯେ ଦୟା ସାଗର
ତାଙ୍କ ପଦ୍ମପାଦେ ଲୟ କର । ॥୩ ॥

ଶ୍ରୀ ପୁରୁଷୋତ୍ତମ ରହଣି କରିବା
ଖାଇବା ଛଡ଼ା ତୁଳସୀ
କହେ ସାଲବେଗ ସିଂହଦ୍ୱାର ଠାରେ,
ହୋଇଥିବା କ୍ଷେତ୍ରବାସୀ
ସେ ଯେ ଆରତ ତ୍ରାଣ
କଳାଗଛକୁ ସିଂହ ପ୍ରୟାଣ
ଚାଲ ଚାଲ ପଶିବା ଶରଣ ॥ ୪ ॥



# ଆହେ ନୀଳ ଶଇଳ

## ସାଲବେଗ

### (-ରାଗ ପ୍ରଭାତ ଭୈରବ)

ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ॥ ଘୋଷା ॥

ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ
ଚକ୍ର ପେଶି ନକ୍ର ନାଶି ଉଦ୍ଧରିଲ ଆପଣ ॥୧ ॥

ଘୋର ବନେ ମୃଗୁଣୀକି ପଡ଼ିଥିଲା କଷଣ
କେଡ଼ବଡ଼ ବିପତ୍ତିରୁ କରିଅଛ ତାରଣ ॥ ୨ ॥

କୁରୁସଭା ତଳେ ଶୁଣି ଦ୍ରୌପଦୀର ଜଣାଣ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ॥ ୩ ॥

ରାବଣର ଭାଇ ବିଭୀଷଣ ଗଲା ଶରଣ
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ॥ ୪ ॥

ପ୍ରହ୍ଲାଦ-ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ॥ ୫ ॥

କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗାଚରଣ ତଳେ କରୁଅଛି ଜଣାଣ ॥ ୬ ॥



# କେଣେ ଘେନି ଯାଉଛ ଜଗନ୍ନାଥଙ୍କୁ

## ସାଲବେଗ

କେଣେ ଘେନି ଯାଉଛ ଜଗନ୍ନାଥଙ୍କୁ
ଆମ୍ଭେ ଦ୍ରଶନ କରିବୁ କାହାକୁ ? । ୦।

ଖୁଣ୍ଟିଆ ଡାକ ଦେଲେ ପହଣ୍ଡି ବିଜେ ହେଲେ
ବିଜୟ କର ପ୍ରଭୁ ଚାପକୁ
ଆମ୍ଭେ ଦ୍ରଶନ କରିବୁ କାହାକୁ ? । ୧ ।

କୂଳବଧୂଙ୍କ ରଡ଼ି ପଣ୍ଡାଏ ଗଡ଼ାଗଡ଼ି
ବିଧାତା ବାମ ହେଲା ଓଡ଼ିଶାକୁ
ଆମ୍ଭେ ଦ୍ରଶନ କରିବୁ କାହାକୁ ? ।୨ ।

ବଡ଼ଦେଉଳୁ ବାହାରି ଶଗଡ଼ିରେ ବିଜେ କରି
ରେଣୁ ଯେ ପଡୁଥିବ ଶ୍ରୀମୁଖକୁ,
କହଇ ସାଲବେଗ ନିର୍ମାଲ୍ୟ କାହୁଁ ହେବ
ଧିକ ଧିକ ଆମ ଜୀବନକୁ
ଆମ୍ଭେ ଦ୍ରଶନ କରିବୁ କାହାକୁ ? । ୩ ।



# ଧନ୍ୟ ଧନ୍ୟ ନୀଳଗିରି ବାସୀ

## ସାଲବେଗ

ଧନ୍ୟ ଧନ୍ୟ ନୀଳଗିରିବାସୀ
ଭାଗ୍ୟଥିଲେ ସାଧୁ ସଙ୍ଗେ ମିଶି
ପେଟ ପୂରାଇଣ କୈବଲ୍ୟ ପାବନ୍ତି
ମୁଖେ ବୋଲୁଥା'ନ୍ତି ଏକାଦଶୀ,
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୧ ।

ପ୍ରଭୁ ବଡ଼ଦାଣ୍ଡ ଦେଖି ହେଲି ତୋଷ
ରେଣୁ ଘେନି ତୁଣ୍ଡେ କଲି ଗ୍ରାସ
ସିଂହଦ୍ୱାରଠାରେ କୈବଲ୍ୟ ପାବନ୍ତେ
ଟଙ୍କ ତୋରାଣିରେ ମନ ତୋଷ
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୨ ।

ସିଂହଦ୍ୱାରେ ବାଜେ ବେତ ବାଡ଼ି
ବାଜନ୍ତେ ପାତକ ଯାଏ ଛାଡ଼ି
ଶ୍ରୀ ଜଗନ୍ନାଥଙ୍କ ଦ୍ରଶନ ନିମନ୍ତେ
ସନ୍ଥଜନମାନେ ଠେଲା ଠେଲି
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୩ ।

ପ୍ରଭୁ ବାଇଶ ପାବଛ ଗଲି ସୁଖେ
କୈବଲ୍ୟ ପସରା ବେନି ପାଖେ
ବ୍ରାହ୍ମଣ ଚାଣ୍ଡାଳ ଏକ ମେଳ ହୋଇ
କୈବଲ୍ୟ ପାବନ୍ତି ମୁଖେ ମୁଖେ
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୪ ।

ଏଥୁ ଅନନ୍ତରେ ଗଲି ଖରେ
　　　　ମୁକତି ମଣ୍ଡପ ଯେଉଁଠାରେ
କଳପ ବଟକୁ ପ୍ରଦକ୍ଷିଣ କରି
　　　　ଆଲିଙ୍ଗନ କଲି ପ୍ରେମ ଭରେ
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୫ ।

ରୋହିଣୀ କୁଣ୍ଡ ପାଦୁକା ରଜ
　　　　ସିଂହ ମାଡ଼ି ବସିଅଛି ଗଜ
ତା' ତହୁଁ ଅବା ମୁଁ କେତେ ବଡ଼ ହେବି
　　　　କାକ ପଡ଼ି ହେଲା ଚତୁର୍ଭୁଜ
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୬ ।

ଓଡ଼ିଆ ଜଗବନ୍ଧୁଙ୍କ ରାଣୀ
　　　　ସୁବର୍ଣ୍ଣ ଥାଳିରେ ପରଷଣି
ଶ୍ରୀ ଜଗନ୍ନାଥଙ୍କ ଦ୍ରଶନ ନିମନ୍ତେ
　　　　ସନ୍ଥ ଜନମାନେ ଠେଲା ଠେଲି
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୭ ।

କହେ ସାଲବେଗ ମୂଢ଼ମତି　　ରଙ୍ଗାଚରଣରେ ଥାଉ ମତି
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ　　ଦୟାକର ମୋତେ ଲକ୍ଷ୍ମୀପତି
ଆହେ ନୀଳଗିରି ଯହିଁ ବିଜେ କରିଛନ୍ତି ରାମହରି । ୮ ।



# ଏକା ମୋ ପ୍ରଭୁ ଜଗନ୍ନାଥ

## ରଘୁ ଅରକ୍ଷିତ ଦାସ

ସବୁରି ସବୁ ଅଛି ମୋହର କେହି ନାହିଁ
ଏକା ମୋ ପ୍ରଭୁ ଜଗନ୍ନାଥ ।
ତୁମ୍ଭରି ନାମ ଧରି ବିଷ ମୁଁ ଭକ୍ଷିଅଛି
ସେ ମୋତେ ହୋଇଛି ଅମୃତ ହେ,ମହାପ୍ରଭୁ ॥ ୧॥

ବାଲିରେ ପଡ଼ିଥାଇ, ନୀଳଚକ୍ରକୁ ଚାହିଁ
ପ୍ରାଣ ମୋ ଶେଷ ହୋଇଥାଇ ।
ବାଲିରେ ପଡ଼ିକରି ମାଂସକୁ ମିଳାଇବି
ଚକ୍ର ଉହାଡ଼ିଥିବ ଧାଇ ହେ, ମହାପ୍ରଭୁ ॥ ୨ ॥

ସାଧୁମାନଙ୍କ ସଙ୍ଗେ ଦିନ ବଞ୍ଚିବି ରଙ୍ଗେ
ତୁମ୍ଭ ଚରଣେ ଚିତ୍ତ ଥାଉ ।
ଛଡ଼ା ତୁଳସୀ ମୁଣ୍ଡେ ନିର୍ମାଲ୍ୟ ଥିବ ତୁଣ୍ଡେ
ହା' କୃଷ୍ଣ ବୋଲି ପ୍ରାଣ ଯାଉ ହେ, ମହାପ୍ରଭୁ ॥ ୩॥

ବଗଡ଼ା ଅନ୍ନ ସଙ୍ଗେ ବଡ଼ି ମହୁର ରଙ୍ଗେ
ସେବାରେ ପୂରାଇବି ପେଟ ।
କଳାରାହାଟ ଠାରେ ଦର୍ଶନ କରୁଥିବି
ଛାମୁରେ ଧରି ମୁଁ ଆଲଟ ହେ, ମହାପ୍ରଭୁ ॥ ୪ ॥

ଏମନ୍ତେ କହୁଅଛି ଶୁଣ ହେ ଶିରିବତ୍ସ
ରୁକୁଣା ଦେବୀଙ୍କର କାନ୍ତ ।
ରଘୁ ଯେ ଅରକ୍ଷିତ ଏ ଭାବରେ ଭଣିଲେ
ଏଥୁ ଉଦ୍ଧର ଜଗନ୍ନାଥ ହେ, ମହାପ୍ରଭୁ ॥ ୫ ॥



# ଜଗତେ ଜଗବଂଧୁ

## ରଘୁ ଅରକ୍ଷିତ ଦାସ

ଜଗତେ ଜଗବନ୍ଧୁ ତୁମର
ନାମ ପଡୁଅଛି ଯେ ନିରନ୍ତର ॥୧ ॥

ଅହଲ୍ୟାକୁ ରାମ ରୂପେ ଉଦ୍ଧାରି
ଧରା ଉଶ୍ୱାସିଲ ରାବଣ ମାରି ॥ ୨ ॥

କୃଷ୍ଣ ରୂପ ଧରି କଂସକୁ ମାରି
ଜନକଙ୍କୁ ପରା ଦେଲ ଉଦ୍ଧାରି ॥୩ ॥

ବାଞ୍ଛା କଳ୍ପତରୁ ଜଗତଗୁରୁ
ପାରି କର ମୋରେ ଭବସାଗରୁ ॥ ୪ ॥

ଦେବେ ଯେ ତୁମ୍ଭର ନ ପା'ନ୍ତି ଅନ୍ତ
ସାହସେ ଲୋଡ଼େ ମୁଁ ସେ ପଦପ୍ରାନ୍ତ ॥ ୫

ଅନାଥର ନାଥ ସୁଦୟା ବହ
ଦୀନ ଅରକ୍ଷିତେ ନିର୍ଦ୍ଦୟ ନୁହ ॥ ୬ ॥



# ଚନ୍ଦନ ଲାଗି ସମୟେ

## ଶ୍ରୀଚନ୍ଦନ

(ରାଗ-କାମ୍ବୋଜୀ, ତାଳ ସରିମାନ )

ଚନ୍ଦନ ଲାଗି ସମୟେ ଚିନ୍ତ ଚିନ୍ତାମଣିକି ॥ଘୋଷ ॥
ସୁବେଶର ଲାଗି ଶେଷ ଲାଗି ହୋଇ ଝୀନବାସ
କଟୀରେ ସୁବର୍ଣ୍ଣ ଝୁମ୍ପା
ଆହା କେଡ଼େ ଠାଣିକି ॥ ୧ ॥

ତିନିବାଡ଼େ ତିନିଲୋକ ସେବକ ପଶୁପାଳକ
ରତ୍ନ ସିଂହାସନେ ଉଭା
ଯୋଡ଼ି ବେନି ପାଣିକି ॥ ୨ ॥

ଚନ୍ଦନ ସଂସ୍କାର ସାରି ପ୍ରଭୁ ଅଙ୍ଗେ ଲାଗି କରି
ହରି ଭଦ୍ରା ସୁଦର୍ଶନ
କମଳା ଘରଣୀଙ୍କି ॥ ୩ ॥

ହଡ଼ପ ନାୟକ ରହି ବିଡ଼ିଆ ପତ୍ରକୁ ବହି
କରାଇ ମୁଣୋହିଁ ତହିଁ
କମ୍ବୁଚକ୍ର ପାଣିକି ॥ ୪ ॥

ଡାକଇ ଖୁଣ୍ଟିଆ ଦ୍ୱିଜ ମଣିମା ଭୋ ଦେବରାଜ
ଅଖିଳ ବ୍ରହ୍ମାଣ୍ଡନାଥ
ପ୍ରଭୁମନ ଜାଣିକି ॥ ୫ ॥

ନିଜ ନିଜ ଗୁଣାବଳୀ    ବୀଣାନାଦେ କୁତୂହଳୀ
ପଳାଇ ଯିବଟି ପାପ
ହରି ଧ୍ୱନି ଶୁଣିକି ॥ ୬ ॥

ସେ କାଳେ କଳାଶ୍ରୀମୁଖ    ଶୁଣନ୍ତି ସକଳ ଦୁଃଖ
ଦର୍ଶନେ ପ୍ରସନ୍ନ ହୋଇ
ରଖ ଦୁଃଖୀ ଶ୍ରେଣୀକି ॥୭ ॥

ଆର୍ତେ ଶ୍ରୀଚନ୍ଦନ ଭାଷେ    ଚିନ୍ତାବଳୀ ମଧ୍ୟେ ଭାସେ
କରୁଣା ନାବେ ବସାଇ
କୂଳେ ରଖ ଆଣିକି ॥ ୮ ॥



# ମନ ଥୟ କରି ଦେଖ ଏଥ

## ବାଇଧର ଦ୍ୱିଜ

(ମୁନିବର ବାଣୀ)

ମନ ଥୟ କରି ଦେଖ ଏଥ
ନୀଳ କନ୍ଦରେ ସୁନ୍ଦର ଜଗନ୍ନାଥ ॥ ଘୋଷା ॥

ଏହି ପ୍ରଭୁ ଜଗନ୍ନାଥ କଶ୍ୟପ ଋଷିଙ୍କ ସୁତ
ବାମନ ମୂରତି ହୋଇ ବଳି ଦ୍ୱାରେ ଉପଗତ
କରେ ଘେନି କୁଶପାତ୍ର, ହରିଲେ ତାହାର ବିତ୍ତ
ପଦ୍ମପାଦ ଦେଇଥିଲେ ବଳି ମାଥ । ॥ ୧ ॥

ଏହି ପ୍ରଭୁ ଜଗନ୍ନାଥ ଦଶରଥଙ୍କର ସୁତ
ସୀତୟା ଘେନି ସଙ୍ଗତେବୁଲିଲେ ଗହନ ପଥ
ସାଗରେ ବାନ୍ଧିଲେ ପଥ ଲଙ୍କାକୁ କଲେ ନିପାତ
ସୀତା ଛଳେ ବଧିଲେଟି ଦଶ ମାଥ ॥ ୨ ॥

ଏହି ପ୍ରଭୁ ଜଗନ୍ନାଥ ନନ୍ଦର ହୋଇଲେ ସୁତ
କାଳୀ ଦଳି ପାଦଗତ ମନ୍ଥିଲେଟି ସୁରନାଥ
କଂସ ଅସୁର ନିପାତ ଜଗତେ ଅଛି ବିଖ୍ୟାତ
ଭାରତ ଯୁଦ୍ଧରେ ବାହି ପାର୍ଥ ରଥ ॥ ୩ ॥

ଏ କଳିକାଳରେ ଦେଖ ଶଙ୍ଖ ଚକ୍ର ଧରି ହସ୍ତ
ବସିଛି କୈବଲ୍ୟ ହାଟ ପାପୀଏ ଦେଖି ମୁକତ

କି ଶୋଭା କଳା ଶ୍ରୀମୁଖ        ଦେଖିଲେ ଖଣ୍ଡଇ ଦୁଃଖ
ପ୍ରଜାପତି ସଙ୍ଗେ ଶୋଭା ବିଶ୍ୱନାଥ ॥ ୪ ॥

ଏହି ପ୍ରଭୁ ଜଗନ୍ନାଥ        ଶଚୀର ହୋଇଲେ ସୁତ
ବୈଷ୍ଣବ ଧର୍ମ ବିଖ୍ୟାତ  ଶିଖାଇଲେ ମହାମନ୍ତ
ବୁଲିଲେ ଏହି ଜଗତ ଭକତ ଘେନି ସଙ୍ଗତ
ଦ୍ୱିଜ ବାଇଧର ଆଶ୍ରା ଲକ୍ଷ୍ମୀକାନ୍ତ ॥ ୫ ॥



# ମାନ ଉଦ୍ଧାରଣ କର ହେ ତାରଣ

## ଉପେନ୍ଦ୍ର ଭଞ୍ଜ

(ରାଗ-ହନୁମତତୋଡ଼ୀ)

ମାନ ଉଦ୍ଧାରଣ କର ହେ କାରଣ
ଶରଣ ମୁଁ ତୁମ ପାଦତଳେ ॥ ପାଦ ॥

ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ନାମ ନୀଳାଚଳେ
ମହୋଦଧି କୂଳେ କଳ୍ପବଟ ମୂଳେ
ବିଜେ କରିଛ ବଡ଼ ଦେଉଳେ । ୧ ।

ଲକ୍ଷେ ଯୋଜନରେ ବାରଣ ଚିନ୍ତିଲା
ତା' ଡାକ ଶୁଣିଲ ପଶାଖେଳେ
ମାରକଣ୍ଡ ଋଷି ଯାଉଥିଲେ ଭାସି
ଉଧରି ଧଇଲ ବାମକରେ । ୨ ।

କିଷ୍କିନ୍ଧାକୁ ଗଲ ବାଳି ବିନାଶିଲ
ବନ୍ଧ ଯେ ବାନ୍ଧିଲ ସିନ୍ଧୁ ଜଳେ
ଲଙ୍କାରେ ରାବଣ ବଧିଲ ଆପଣ
ଜନକ ନନ୍ଦିନୀ ସୀତା ଛଳେ । ୩ ।

ଯୁଧିଷ୍ଠିର ବୋଲେ ହସ୍ତିନାକୁ ଗଲ
ଭୋଜନ କଲ ବିଦୁର ଘରେ

କୁରୁସଭା ତଳେ ପାଞ୍ଚାଳି ଚିନ୍ତିଲା
କୋଟି ବସ୍ତ୍ର ଦେଲ ଅବହେଳେ । ୪ ।

ବନପୋଡ଼ି କାଳେ ଘୋର ଦାବାନଳୁ
ଉଦ୍ଧରି ଧଇଲ ବ୍ରଜବାଳେ
ଭଣେ ଉପଇନ୍ଦ୍ର କବିକୁଳଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦ ତଳେ । ୫ ।



# କଳା ଶ୍ରୀମୁଖ ହେ ...

## ଉପେନ୍ଦ୍ର ଭଞ୍ଜ

କଳା ଶ୍ରୀମୁଖ ହେ ! ନ ଗଲା ମୋହର ଦୁଃଖ
କଳପତରୁକୁ ଆଶ୍ରେ କରିଛି ମୁଁ
କି ବୋଲିବେ ଶୁଣି ଲୋକ ॥ ଘୋଷା ॥

ବିବସନ କଲାବେଳେ ଅନ୍ଧବଳା ବୃନ୍ଦାବନ ହରିଣାଙ୍କ
ଆଣି କୋଟି ଚେଳ ପାଞ୍ଚାଳିକି ଦେଲ କି ରୂପେ ହୋଇ ତା ପକ୍ଷ ॥ ୧ ॥

ଗୋକୁଳ ଶବରୀ ଆଣିଦେଲା କୋଳି ବିକିବାକୁ ବନଜାକ୍ଷ
ହେଲା ତା' ପସରା ଯାକ ହେମ ପରା ପଡ଼ନ୍ତେ ତୁମ୍ଭ କଟାକ୍ଷ ॥ ୨ ॥

ଦରିଦ୍ର ବିପ୍ରର କଥାକୁ ତୁମ୍ଭର ହୃଦୟେ କରି ବିବେକ
କେଉଁ ସମ୍ପଦକୁ ନ ଦେଲ ତାହାକୁ ଦେବାଧିଦେବ ନାୟକ ॥ ୩ ॥

ବଳୀକୁ ପାତାଳେ ମଣିମୟ ପୁରେ ବିର୍ଲୋହ ଅନେକ ସୁଖ
ରଖିଅଛ ପୁଣି ତାକୁ ଚକ୍ରପାଣି ତହୁଁ କରିବାକୁ ମୋକ୍ଷ ॥ ୪ ॥

ହେବାର ବିନତ ଦଶାନନ ଭ୍ରାତ ତବ ଶ୍ରୀଚରଣେ ଦେଖ
ବସିଛି ସଜୀବେ ଅଦ୍ୟାଦି ଏ ଭବେ ପାଇ ସ୍ୱର୍ଣ୍ଣମୟୀ ଲଙ୍କ ॥ ୫ ॥

ମୃକୁଣ୍ଡ କୁମାର ପାଣ୍ଡବାଦିକାର ନ ଫେଡ଼ି କେଉଁ ଆତଙ୍କ
କାହାକୁ କି ଦୟା କରିନାହଁ ମାୟାଧର ଆହେ କୈବଲ୍ୟଦାୟକ ॥ ୬ ॥

କହେ ଭଞ୍ଜ ବୀରବର ରମାବର ପ୍ରଭୁ ଦୀନଜନ ରକ୍ଷ
ଭାସୁଛି ଏ ଭବ ଦୁସ୍ତର ଅର୍ଣ୍ଣବ ମଧ୍ୟେ ମୁଁ ହୋଇ ନିରେଖ ॥ ୭ ॥



# ଜୟ ଜୟ ଜଗନ୍ନାଥ

## ଉପେନ୍ଦ୍ର ଭଞ୍ଜ

ଜୟ ଜୟ ଜଗନ୍ନାଥ
ଦାରୁ ରୂପ ଧାରୀ
ନୀଳ ଗିରୀଶ ଗିରୀଶ
ବନ୍ଦନୀୟ ହରି ॥ ୧ ॥

ମହାବଳ ବଳ ଅବ
ରଜ ଭଦ୍ରାରାଜ
ଗରୁଡ଼ାସନ ସନକ
ପୂଜ୍ୟ ଚତୁର୍ଭୁଜ ॥ ୨ ॥

ନୀରଦ ସୁନ୍ଦର ଦର-
ହର ହରଷଦ
ଶମନ ମନରେ ଜାତ
କର ମହା ଖେଦ ॥ ୩ ॥

ସେ ପ୍ରଭୁ କମଳାକାନ୍ତ
କାନ୍ତ ପଦଧାନେ
ଉପଇନ୍ଦ୍ର ବୀରବର
ଅତି ତୋଷ ମନେ ॥ ୪ ॥



# ଜଗବନ୍ଧୁ ପରି ଜଣେ ସାମନ୍ତ

## ଦୀନକୃଷ୍ଣ ଦାସ

ଜଗବନ୍ଧୁ ପରି ଜାଣ ସାମନ୍ତ
ନାହିଁ ନାହିଁ ତ ।
ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ରରେ ଛେଦନ୍ତି ଆରତ ॥ଘୋଷା ॥

ଯେତେବେଳେ ପ୍ରଭୁ ଗୋପପୁରେ ଥିଲେ
ଅକ୍ରୁର ଆଣିଣ ଗଲା ତ
ଗାଇ ଦୁହୁଁ ଦୁହୁଁ କେଶ ଫିଟିଗଲା
ଚତୁର୍ଭୁଜ ହେଲେ ଅନନ୍ତ । ୧ ।

ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଣ
ବାଳିକି ବିନାଶ କଲେ ତ
ରାବଣ ଭ୍ରାତା ଯେ ଶରଣ ପଶିଲା
ଲଙ୍କାଗଡ଼ ତାକୁ ଦେଲେ ତ ॥୨ ॥

କୁରୁସଭା ତଳେ ଦ୍ରୌପଦୀ ଚିନ୍ତିଲା
କୋଟି ବସ୍ତ୍ର ଦିଆଇଲେ ତ
ଭାରତ ଯୁଦ୍ଧରେ ଭରତିଆ ପକ୍ଷୀ
ଘଣ୍ଟ ଘୋଡ଼ାଇ ରଖିଲେ ତ ॥ ୩ ॥

ଏମନ୍ତ ସାମନ୍ତ ତ୍ରିଭୁବନେ ନାହିଁ
ନାଶନେ ଆରତି ଆରତ
କହେ ଦୀନକୃଷ୍ଣ ଦାସ ଯେ ଶ୍ରୀକୃଷ୍ଣ
ପଦ୍ମପାଦ ଚିତ୍ତେ ଧାୟିତ ॥ ୪ ॥



# ନୀଳଗିରି ପତି

## ଦୀନକୃଷ୍ଣ ଦାସ

ଜୟ ଜୟ ଜଗନ୍ନାଥ ନୀଳଗିରି ପତି
ଅଭିନବ ଜଳଧର ସୁନ୍ଦର ମୂରତି ହେ ।୧ ।

ସୁସଞ୍ଚ ଠାଣିରେ ଶୋହେ ସୁବର୍ଣ୍ଣର ସୂତା
ଚୂଳରେ ଦୟଣା ଗଭା କସ୍ତୁରୀର ଚିତା ହେ । ୨ ।

ଢଳଢ଼ଳ ଦିଶଇ ମୁକୁତା କଣ୍ଠିମାଳ
ଶ୍ରବଣ ପୁଟରେ ବେନି ମର୍କତ କୁଣ୍ଡଳ ହେ । ୩ ।

ନବରତ୍ନ ପଦକ ହୃଦରେ ଭଲ ସାଜେ
ମର୍କତ କଙ୍କଣ ବେନି ଭୁଜରେ ବିରାଜେ ହେ । ୪ ।

ଡମ୍ବରୁ ମଝାକୁ ଶୋଭା ଦିବ୍ୟ ଓଡ଼ିଆଣି
ଶ୍ରୀଅଙ୍ଗେ ଚନ୍ଦ୍ର ଚନ୍ଦନ ନେତ୍ର ଚାରୁ ଠାଣି ହେ । ୫ ।

ରୂପକୁ ନୁହଇ ଲକ୍ଷ୍ୟ କୋଟିଏ ମଦନ
ରଙ୍ଗ ଅଧରକୁ ଶୋହେ ଡାଳିମ୍ବ ଯେସନ ହେ । ୬ ।

କଟଟି ବାହୁଟି ଯେ ବିବିଧ ରତ୍ନ ଜଡ଼ି
ଦୟଣାର ଧଣ୍ଡାମାଳ ହୃଦଯାଏଁ ପଡ଼ି ହେ ।୭ ।
କଳାମୁଖ ଗୋଟିକି ସୁନ୍ଦର ଚକାଡ଼ୋଳା
ପଦ୍ମଫୁଲ ଭିତରେ କି ଭୃଙ୍ଗ କରେ ଖେଳା ହେ । ୮ ।

ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋହେ
କୋଟିଏ କନ୍ଦର୍ପ ରୂପ ତ୍ରିଭୁବନ ମୋହେ । ୯ ।

ଭକତ ଜନ ସଙ୍ଖାଳି ମୁକତିର ଘର
ଶରଣ ମାଗଇ ଦୀନକୃଷ୍ଣ ଦାସ ଛାର ହେ ।୧୦ ।



# ଜୟ ଜଗବନ୍ଧୁ ହେ ଯଦୁନନ୍ଦନ

## ଦୀନକୃଷ୍ଣ ଦାସ

ଜୟ ଜଗବନ୍ଧୁ ହେ ଯଦୁନନ୍ଦନ
ବ୍ରଜବାଳୀ ହୃଦତଟ ଚନ୍ଦନ ।।ଘୋଷା ।।

ବଡ଼ ଦେଉଳେ ବିହାର ବଡ଼ ଚିତା ବଡ଼ ଚୂଳ
କି ଶୋଭା ପାଉଛି କଳା ବଦନ ।।୧ ।।

ସେ ଯେଉଁ ଅଳକା ପନ୍ତି ଦେଖି ଭୁଲିଯିବେ ଯତି
ମୁନିଜନଙ୍କର ମନମୋହନ ।।୨ ।।

ବଡ଼ ବଡ଼ ଚକାଆଖି ବଳିଆର ଭୁଜ ଦେଖି
ତହିଁରେ ରହିଲା ଲାଖି ମୋ ମନ ।। ୩ ।।

ସେ ଯେଉଁ ରଙ୍ଗ ଅଧର ପୂରି ରହିଛି ମଧୁର
ଭାଲେ ଗଜମୋତି ଅତି ଶୋଭନ ।। ୪ ।।

କଟି ତଟେ ପାଟ ଝୁମ୍ପା ଓଡ଼ିଆଣୀ ତନୁ କିମ୍ପା
କି ଶୋଭା ଦିଶୁଛି ରେଖାକୁନ୍ଦନ ।। ୫ ।।

ଶ୍ରୀଜଗନ୍ନାଥ ଚରଣେ ମନ ରହୁ ଅନୁକ୍ଷଣେ
ଦୀନକୃଷ୍ଣ ଦାସ କରେ ଜଣାଣ ।। ୬ ।।



# କୃପାସିନ୍ଧୁ ବଦନ କରି ଅବଲୋକନ

## ଦୀନକୃଷ୍ଣ ଦାସ

କୃପାସିନ୍ଧୁ ବଦନ କରି ଅବଲୋକନ
କେଉଁ କରମହୀନ ଜନ
କାକୁସ୍ଥଭର ହୋଇ କରଯୋଡ଼ି ଜଣାଇ
ଗରୁଡ଼ସ୍ତମ୍ଭ ସନ୍ନିଧାନ
ହେ ମହାପ୍ରଭୁ !
କୃପାସରିତ ପତି ହୋଇ   କର୍ମହୀନ ଜନର ତହିଁ ।
କରୁଣା କଲ ନାହିଁ, କିପାଁ ହେ ଭାବଗ୍ରାହୀ
ଏହା ମୁଁ ବିଚିତ୍ର ମଣଇଁ ହେ ମହାପ୍ରଭୁ ! ॥ ୧ ॥

ଖିଳ ବ୍ରହ୍ମାଣ୍ଡୋଦରେ କର୍ମହୀନ ଜନରେ
ଯେଣୁ ମୋ ସମ ଆନ ନାହିଁ,
ଖଗତିଳକ କାନ୍ତ, ସେ କାରଣୁ ଏମନ୍ତ,
ଖେଦ ଆରତେ କହିଲଇଁ ହେ
ହେ ମହାପ୍ରଭୁ !
ଖଣ୍ଡିଲ ନାହିଁ ଯେଣୁ ମୋର,  ଖେଦ ଆରତ ରତ୍ନାକର
ଖିଳ ବ୍ରହ୍ମାଣ୍ଡ ଧର, ଖଣ୍ଡି ନାହଁ କାହାର
କେଉଁ ବିପରି ବିଶ୍ୱମ୍ଭର ହେ ମହାପ୍ରଭୁ ! ॥ ୨॥

ଗଜରାଜକୁ ଜଳେ ଗ୍ରାହ  ଗ୍ରାସିବା କାଳେ
ଡାକିଲା ରଖ ଆଦିମୂଳ
ଗୁରୁତର ଆତଙ୍କ ଜାଣିଣ ତା ଶ୍ରୀରଙ୍ଗ
ରଥାଙ୍ଗ ପେଶିଲ ତତ୍କାଳ

ହେ ମହାପ୍ରଭୁ!
ଗ୍ରାହ ଜୀବନେ ନିବାରିଲ     ଗଜ ବିପତ୍ତିରୁ ତାରିଲ
ଗୁରୁତ୍ମାନ କେତନ, ମମକର୍ମକୁ ହୀନ
ନିରାଶା ନିରନିଧି ହେଲ ହେ ମହାପ୍ରଭୁ ! ॥ ୩ ॥

ଘନଶ୍ୟାମ ହେ, ଘନ ବିପଦ ବିନାଶନ
ବିଚାରୁଥାଇଁ ମନେ ମୋର
ଘୋର ବିପତ୍ତି ଛାର, କେତେମାତ୍ର ଯାହାର
ପ୍ରଭୁ ମହିମା ଅକୂପାର
ହେ ମହାପ୍ରଭୁ !
ଘନେ ଏ କଥା ମନେ ଥିଲା, ଘୃଣା କି କାରଣେ ନୋହିଲା
ଘୋର ବିପତ୍ତି ମୋର, ହୋଇ ଘଟକୁମ୍ଭର
ମହିମା ବାରିଧି  ଶୋଷିଲା ହେ ମହାପ୍ରଭୁ !  ॥ ୪ ॥

ନିରକ୍ଷ ନିସ୍ତାରଣ କାରଣେ ପ୍ରହରଣ
କରକମଳରେ ବହିଛ ।
ନିଧନ ସମୟରେ କିପାଁ ମୋ ବିଷୟରେ
ନିର୍ଦ୍ଦୟ ହୃଦୟ ହେଉଛ
ହେ ମହାପ୍ରଭୁ !
ନୀଳାଚଳରେ ତୁମ୍ଭେ ଥିବ          ନିରେଖ ନିଶ୍ଚେ ନାଶ ଯିବ,
ନିଖିଳ ନିକେତନ, ନବପଞ୍ଚ ଭୁବନ,
ମଧରେ କେମନ୍ତ ଶୁଭିବ ହେ ମହାପ୍ରଭୁ ! ॥ ୫ ॥

ଚଉବର୍ଗ ଯାହାର ଚରଣେ ପରିଚାର
ଚଞ୍ଚଳା ଯାର ଆଜ୍ଞାକାରୀ ।
ଚାହିଁ ଯାହା ଶ୍ରୀମୁଖ ଚ୍ୟୁତ ଦୂରିତ ଦୁଃଖ
ସେ ପ୍ରଭୁ-ଭୃତ୍ୟ ହିଁ ଭିକାରୀ

ହେ ମହାପ୍ରଭୁ ।
ଚତୁର୍ଦ୍ଦଶ-ଭୁବନ-ପ୍ରାଣୀ        ଚକିତ ହେବେ ଏହା ଶୁଣି
ଚିତ୍ର ନୋହେ କି ଏହୁ କଥା ହେ ମହାବାହୁ
ନୀଳଶଇଳ-ଚୂଡ଼ାମଣି ହେ ମହାପ୍ରଭୁ । ॥ ୬ ॥

ଛାଡ଼ି ସକଳ ଆଶ ତୁମ୍ଭ ପାଦ ସାରସ
ଭରସା କରିଛି ସନ୍ତତେ,
ଛୋଭ-ସାଗରେ ପଡ଼ି ମରିବା ବେଳେ ବୁଡ଼ି
ଛାଡ଼ିତ ଦେଉଅଛ ମୋତେ
ହେ ମହାପ୍ରଭୁ !
ଛିତି ମଣ୍ଡଳେ ତୁମ୍ଭ ବିନା,        କ୍ଷଣେ ହେଁ ନାହିଁ ଆନ ସେହ୍ନା ।
ଛଦ୍ମ ନୋହେ ଉଚିତ,କରୁଛି ଭୃତ୍ୟ ସତ୍ୟ
ନିଶ୍ଚେ ଏତେବେଳକୁ ସିନା ହେ ମହାପ୍ରଭୁ ! ॥ ୭ ॥

ଜଗତ-ଅନୁରାଗେ ଜାତ ଅବନୀ ଭାଗେ
ଦଇବେ ଜଗତର ନାଥ
ଜଗତ ଜନଙ୍କର ଭିତରୁହିଁ ବାହାର
ମୁହିଁ କି କାରଣେ ଅନାଥ
ହେ ମହାପ୍ରଭୁ!
ଜଗନ୍ନାଥ ନାମ ବହିବ        ଜନ ଆରତ ନ ଶୁଣିବ ।
ଜଗତ ପତି ହୋଇ ଅନୀତି କଲାଠାଇଁ
ଆଉ କେ କା' ଆଗେ କହିବ ହେ ମହାପ୍ରଭୁ! ॥ ୮ ॥

ଝଳିଛି ଏ ବଚନ ନବପଞ୍ଚ ଭୁବନ
ଆରତ ଭଞ୍ଜନ ଶ୍ରୀହରି ।
ଝଞ୍ଜକା ମଣୁଅଛ କିପାଁ ମୋ ବିଷୟରେ
ବିନାଶ କାଳେ ଦଇତାରି

ହେ ମହାପ୍ରଭୁ !
ଝାଡ଼େ ଡାକିଲା ଗର୍ଭିଣୀ, ଝାଡ଼ିତିକାରେ ତା ଡାକ ଶୁଣି ।
ଝିମିଟେ ସେ ବିପତ୍ତି ହରିଲ ହେ ଶ୍ରୀପତି
ମୋରେ ନିର୍ଦ୍ଦୟ କିପାଁ ପୁଣି ହେ ମହାପ୍ରଭୁ ! ॥ ୯ ॥

ନିରାଶ ଥିଲେ ଚିତ୍ତେ କର ହେ ପ୍ରଭୁ ! ମୋତେ
ମୋଜୀବ ପ୍ରତି ଆଶା ତୁଟୁ ।
ନିଷ୍ଠେ କରୁଣାନିଧି ହେଲେ ନିର୍ଦ୍ଦୟ ବୁଦ୍ଧି
ବୋଲି ତ୍ରିଭୁବନେ ପ୍ରକଟୁ
ହେ ମହାପ୍ରଭୁ ।
ନିଷ୍ଠେ ନିର୍ଦ୍ଦୟ ହେବ ଯେବେ, ନିଖିଳେ ଆଉ ନିକି ଥିବେ ।
ନାଗ ନୃପତି ସୁର ସମୀର ନିଧିଧର
ଯେ ଯାହା ସତ୍ୟକୁ ଲଙ୍ଘିବେ ହେ ମହାପ୍ରଭୁ ! ॥ ୧୦ ॥
* * * *

ଡେରିଥିଲ ଶ୍ରବଣ ଗଜ ଆଦି ବ୍ରାହ୍ମଣ
ଡାକିଲା ମାତ୍ରକେ ଶୁଣିଲ
ଡୋଳା ଗୋଚରେ ଥାଇ ଡାକିଲେ ନ ଶୁଭଇ
କର୍ଣ୍ଣ କୁହର କି ମୁଦିଲ
ହେ ମହାପ୍ରଭୁ !
ଡାକ ବାଜୁଛି ଜଗତରେ, ଡାକିଲେ ତ ଶୁଣ କର୍ଣ୍ଣରେ ।
ଡରିଲ କି ମୋହର ବିପଦ ଦେଖି ଘୋର
ତେଣୁ ବା ନ ଶୁଣୁଛ ବାରେ ହେ ମହାପ୍ରଭୁ! ॥ ୧୩ ॥
* * * *

ଆହେ ହେ ମହାବାହୁ! ବିପଦଚନ୍ଦ୍ର-ରାହୁ
ଆଜ୍ଞା ଯେ ଦେଇଛ ଶ୍ରୀମୁଖେ ।
ଆରତ ଜନ ହେଲେ ଆରତରେ ଡାକିଲେ
ମୁଁ ତାହା ନ ସହଇ ରେଖେ

ହେ ମହାପ୍ରଭୁ !
ଆଉ ଆରତ ମୋହପରେ,　　ଅଛି କେ ବ୍ରହ୍ମାଣ୍ଡ ଭିତରେ ।
ଆରତତ୍ରାଣ ତାହା ଜାଣ ହେ ଚଉବାହା ।
ପ୍ରତେ ତ ନାହିଁ ମୋ ମନରେ ହେ ମହାପ୍ରଭୁ ! ॥ ୧୫ ॥

* * * *

ତୁମ୍ଭେ ତ୍ରିତାପହର ତ୍ରିଭୁବନ ଈଶ୍ୱର
ପତିତ-ଜନ-ନିସ୍ତାରଣ
ତେଣୁକରି ମୋହର ଭରସା ନିରନ୍ତର
ଯେଣୁ ମୁଁ ପତିତ ଭୂଷଣ
ହେ ମହାପ୍ରଭୁ !
ତଥାପି କରୁଣା ନିଧାନ;　　ତ୍ରାହି ନ କଲେ ଦୀନଜନ ।
ତେଣୁ ତୁମ୍ଭର ଦୀନବନ୍ଧୁ-ନାମ-କେତନ
ତେଜ ତ୍ରିଭୁବନ-ମୋହନ ହେ ମହାପ୍ରଭୁ ! ॥ ୧୬ ॥

* * * *

ଦୟା ସାଗର ବୋଲି ଦମ୍ଭ ତେଜି ଭଜିଲି
ଅଭୟ ଚରଣେ ତୁମ୍ଭର
ଦେଲ କାହିଁ ବିବୁଧପତି ପଦ ବିଶୁଦ୍ଧ
ମୋ କର୍ମେ ଦୟା ହିଁ ଦୁସ୍ତର

ହେ ମହାପ୍ରଭୁ !
ଦୀନବଂଧୁ ନାମ ତୁମର,　　ଦ୍ୱିସପ୍ତ ଲୋକରେ ବିସ୍ତାର ।
ଦେଖୁ ଦେଖୁ ଦୁର୍ଗତି ଦେଉଛ ଦଣ୍ଡ ଅତି
ଏ କୃପା ହୋଇବ କାହାର ହେ ମହାପ୍ରଭୁ! ॥ ୧୮ ॥

* * * *

ମହାପ୍ରଭୁ ଅନ୍ତର କରିଲେ ହେଁ ମୋହର
ତୁମ୍ଭ ବିନା ଦୋସର ନାହିଁ
ମୃଗ ଧୃତ ଚକୋର ଚାତକ ଜଳଧର
ମୀନ ଜୀବନ ପ୍ରାୟ ହୋଇ

ହେ ମହାପ୍ରଭୁ !
ମୋରେ ଯେବେ ଦୟା ନୋହିବ, ମୋ ଜୀବ କ୍ଷଣେ ନ ରହିବ ।
ମହତ କରି କହୁଅଛି ହେ ମହାବାହୁ ।
ସବୁରି ସଂଶୟ ରହିବ ହେ ମହାପ୍ରଭୁ ! ॥ ୨୫ ॥

* * * *

ଲଲାଟର ଲିଖନ, କେ କରିପାରେ ଆନ
ଏମନ୍ତ ଆଜ୍ଞା ହେବ ଅବା
ଲଭି ତୁମ୍ଭଙ୍କୁ ପତି ପଣେ ହେ ରମାପତି
କର୍ମକୁ ଯେବେ ଆଦରିବା
ହେ ମହାପ୍ରଭୁ !
ଲୀଳା ମାତ୍ରକେ ଏ ସଂସାର ସୂତା ଲୁତା ପ୍ରାୟେ ସଂହାର
ଲୋକ କର୍ମକୁ ସହୁ ସଚେତି ମହାବାହୁ
ଏମନ୍ତ ବିଚାର ମନର ହେ ମହାପ୍ରଭୁ ! ॥ ୨୮ ॥

* * * *

ଶେଷ ବିରଞ୍ଚି ଶିବ ସୁର ଆଦି ବାସବ
ଶୁକ ସନକ ସନାତନ ।
ସେବେ ଯେଉଁ ପୟରେ କୋଟି ଅଂଶ ଲକ୍ଷରେ
ମୁଁ ଦାସ ପଣେ କି ଭାଜନ
ହେ ମହାବାହୁ !
ସବୁ ଭରସା ଅଛି ଏଣୁ, ଶରଣ ନିସ୍ତାରଣ ଯେଣୁ
ଶୁଣିଅଛି ଆହୁରି କଥାଏ ଚିତ୍ରକରି
ସୁମେରୁ ସମ କର ରେଣୁ ହେ ମହାପ୍ରଭୁ ! ॥ ୩୦ ॥

* * * *

ସେବକ ହୋଇ କରି ପ୍ରଭୁ କୋପକୁ ଡରି
ଭରସି ଯେବେ ନ କହିବ ।
ଶୁଣ ମହିମା ମେରୁ ଏ ଦୁଃଖ ଜଳଧିରୁ
କେମନ୍ତ ପ୍ରକାରେ ତରିବ

ହେ ମହାପ୍ରଭୁ !
ସର୍ବଜ୍ଞ ପୁରୁଷ ଗୋସାଇଁ
ସକଳ ଜୀବ ହୃଦେ ଥାଇ
ସେବକ ଦୁଃଖ ଜାଣି ଦୟା ନ କଲେ ପୁଣି
ଆଉ ଜାଣତ ଅଛି କେହି ହେ ମହାପ୍ରଭୁ ! ॥ ୩୨ ॥

ହୃଦୟେ ଅଛି ମୋର ଏହୁ ଭବ ସାଗର
ତରିବି ତୁମ୍ଭ ମହିମାରୁ
ହେଉ ଅଛି ସଂଶୟେ ଯେଣୁ ମୋହ ବିଷୟେ
ଅକରୁଣା ମହିମା ମେରୁ
ହେ ମହାପ୍ରଭୁ !
ହୋଇଲା କର୍ମ ମୋ ବଇରି,
ହୃଦୟ ଦହଇ ମୋହରି
ହେତୁ କର୍ମର ତୁମ୍ଭେ ତେଣୁ କରି ମୁଁ ଦମ୍ଭେ
ଗୁହାରି କଲି ଦଇତ୍ୟାରି ହେ ମହାପ୍ରଭୁ ! ॥ ୩୩ ॥

କ୍ଷମା ସାଗର ବୋଲି ଶରଣ ମୁଁ ପଶିଲି
ଜଣାଇଲଇଁ ଶ୍ରୀପୟରେ
କ୍ଷଣେ ହେଁ ମୋହ ମନ ନ ରହେ ତୁମ୍ଭ ଧ୍ୟାନ
ଗୁଣ ଗାୟନ ମାନଙ୍କରେ
ହେ ମହାପ୍ରଭୁ !
କ୍ଷୋଭ ଯେବେ ମନେ ନୁହନ୍ତା
କ୍ଷଣେ ହେ ନାମ କେ ଛାଡ଼ନ୍ତା
କ୍ଷାର ଦୀନ ପାମର କୃଷ୍ଣ କିପାଁଇ ଛାର
ଭବସାଗରକୁ ତରନ୍ତା ହେ ମହାପ୍ରଭୁ ! ॥ ୩୪ ॥



# ଆହେ ନୀଳାଚଳ ନାୟକ

## ଦୀନକୃଷ୍ଣ ଦାସ

(ରାଗ-ଖରହରପ୍ରିୟା)

ଆହେ ନୀଳାଚଳ ନାୟକ
ଦୀନ-ଅକିଞ୍ଚନ-ସୁଖ ଦାୟକ । (ଘୋଷା)

ଚନ୍ଦ୍ରକାନ୍ତି ଜିଣି ରମଣୀୟ ଠାଣି
କଳା କଳେବର କି ଢଳଢଳ
ଆର୍ତ୍ତୀ ଜନଙ୍କର ଆର୍ତ୍ତବିଧ୍ୱଂସନେ
ମହାବାହୁ ପ୍ରସାରିଛ କାଳକ । ୧ ।

ଧବଳ କମଳ ନୟନ ଯୁଗଳ
ଚାହାଣୀ ଭଙ୍ଗିମା ତ ଅତିରେକ
ଦଶନ-ବସନ ରଙ୍ଗିମା ଅତୁଳ
ପ୍ରସନ୍ନମୟ ଶ୍ରୀକଳା ଶ୍ରୀମୁଖ ।୨।

କପାଳରେ ସୁନା ଚିତା ସୁଶୋଭିତା
ତହିକି ପୁଣି କସ୍ତୁରୀ ତିଳକ
ଚନ୍ଦନର ବିନ୍ଦୁ କି ସେ ବାଳଇନ୍ଦୁ
ଅତ୍ୟନ୍ତ ଘଟଣ ସେ ତ୍ରିପୁଣ୍ଡକ । ୩ ।

ଶ୍ରବଣ ଯୁଗଳେ ମକର କୁଣ୍ଡଳ
ଖେଳଇ ସେ ଗଣ୍ଡ ମଣ୍ଡଳ ପାଖ
କରରେ କଟଟି କଙ୍କଣ ବାହୁଟି
ହୃଦୟରେ ବ୍ୟାଘ୍ର ନଖୀ ପଦକ । ୪ ।

କଣ୍ଠେ ବିଲମ୍ବିତ ମଣିମୟ ହାର
କଉସ୍ତୁଭ ଦୀପ୍ତିମନ୍ତ ଝଲକ
କଳିତ ଲଳିତ ବାସ ବନମାଳ
ବୈଜୟନ୍ତୀ ମାଳ ଆଜାନୁତକ । ୫ ।

କଷ୍ଟ ଦୁଷ୍ଟ ବିନାଶନ ଶ୍ରୀ ଆୟୁଧ
ଶଙ୍ଖ କମଳ ସୁଦର୍ଶନ ଚକ୍ର
କଟକି ଶୋଭଇ କନକ କିଙ୍କିଣୀ
ତହିରାଜେ ପୀତ ପଟ ଝଟକ । ୬ ।

କିବା ଦେବା ଲକ୍ଷ କରୁଣା କଟାକ୍ଷ
କୋଟି ମଦନକୁ ଧନୁ ଶାୟକ
ମୋହନ ବେଶକୁ ଭକ୍ତେ ଦେଖୁ ଦେଖୁ
ସର୍ବାଙ୍ଗରେ ଜାତ ହୁଏ ପୁଲକ । ୭ ।

ଭଣେ ଦୀନକୃଷ୍ଣ ହୋଇଣ ସତୃଷ୍ଣ
ଅରୁଣ ପଙ୍କଜ ଚରଣ ରଙ୍କ
ବଳିଆର ଭୁଜଛାୟା ତଳେ ପ୍ରଭୁ
ଆହ୍ଲାଦ ହୃଦୟେ ଦାସକୁ ରଖ । ୮ ।



# ଜଗବନ୍ଧୁ ଅଙ୍କେ ରତନ ପଲଙ୍କେ

## ଦୀନକୃଷ୍ଣ ଦାସ

(ରାଗ କାମ୍ବୋଜୀ—ତାଳ ଝୁଲା)

ଜଗବନ୍ଧୁ ଅଙ୍କେ ରତନ ପଲଙ୍କେ
ପହୁଡ଼ିଲେ ସିନ୍ଧୁ-ଜେମାଦେଈ ।ଘୋଷା ।

ଦିବ୍ୟ ସୁବାସ ଜଳ ସୁନାଝରୀରେ
ଦିବ୍ୟ ସୁବାସ ପଇଡ଼ ତଳେ ଥୋଇ
କୁସୁମ ବିଞ୍ଚଣୀ ଧରି କେ ବିଞ୍ଚଇ
ବେନି ସଖି ହେଲେ କୁହାକୁହି । ୧ ।

ପୂଗ ଖଇର ଅଳାଇଚ ଲବଙ୍ଗ
ଯାତି ଶ୍ରୀଫଳ କରିଣ ଏକ ସଙ୍ଗ
ବିଚିତ୍ର କରିଣ ବିଡ଼ିଆ ସଜାଡ଼ି
ରତ୍ନ ବଟାରେ ଖଞ୍ଜିଲେ ନେଇ । ୨ ।

କେ ବୋଲେ ଅନା ଆରେ ମୀନ ନୟନା
ଘନ କୋଳେ କି ଚନ୍ଦ୍ର ଚକୋର ସିନା
ଝଳି ଅଙ୍ଗରେ ମରକତକୁନ୍ଦନ
ମୀନାକୁ ଫୁଙ୍କି ଦେଇଛି ବିହି । ୩ ।

କହେ ଦୀନ କୃଷ୍ଣ ସେ ଶୋଭା ଦର୍ଶନ
ପଡ଼ିବି ଚରଣେ ହୋଇବେ ପ୍ରସନ୍ନ
ଯେଉଁ ଚରଣ କୋଟି ବ୍ରହ୍ମା ମୁନୀନ୍ଦ୍ର
ଯୋଗେନ୍ଦ୍ର ନ ଧ୍ୟାୟୀ ପାନ୍ତି ଧ୍ୟାୟି । ୪ ।



# ଗୁଣ୍ଡିଚା ଯାତ୍ରା

## ଲୋକନାଥ ବିଦ୍ୟାଧର

(ରାଗ-ଚୋଖି)

ଯେବେ ଶୁଣ ସାଧୁନର      ଶ୍ରୀଗୁଣ୍ଡିଚା ଯାତ୍ରା ବର
ଯାହା ଚିନ୍ତନ୍ତି ଅମର, ଧାତା ଈଶ୍ୱର ।
ସମସ୍ତ ନେତ୍ର ଚକୋର      ଚୟକୁ ପୀୟୁଷ ଧାର
ମନ ଚାତକ ନିକର ଜୀବନଧର ॥
ଯାତ୍ରାଧାନେ କଳୁଷମାନ
ଘନକାଳ ରେଣୁ ପ୍ରାୟେ ହୋୟେ କି ଧନ ॥ ୧ ॥

ଯେ ଯେଉଁ ଆଷଢ଼ ମାସ      ଶୁକ୍ଳ ଦୁତିଆ ଦିବସ
ପୁଷ୍ୟାନକ୍ଷତ୍ର ପ୍ରବେଶ ହୋଇତଥାଇ ।
ସେ ଦିନ ରାତ୍ରରୁ ଆଜ      ସେହ୍ଲାପଟ ଲାଗି ସଜ
ହୁଅନ୍ତି ଭଦ୍ରା ଅଗ୍ରଜ ସହିତ ହୋଇ
ପ୍ରାତଃ ଭୋଗ ସେଠାରେ ସାରି ।
ବିଜୟେ କରନ୍ତି ନୀଳାଞ୍ଚଳ କେଶରୀ ॥ ୨ ॥

ଅଗ୍ରେ ବିଜେ କାମପାଳ      ମହାମଙ୍ଗଳ ସବଳ
ଦଇତା ପତି ସଙ୍କୁଳ ଘେନି ପାଶରେ ।
କେଉଁମାନେ ଚରମରେ      କେହୁ ଶ୍ରୀଭୁଜତଳରେ
କେ ଡୋର ଘେନି ଆଗରେ ଅତି ସମ୍ଭରେ ।
ଆହୁତ କରିକେ ତହିଁରେ
ବିଜୟ କରାନ୍ତି ହଳିଙ୍କି ଧୀରେ ଧୀରେ ॥ ୩ ॥

ସେ ବିଲୋକନେ ପବିତ୍ର ହୋୟେ ମନ ଗାତ୍ର ନେତ୍ର
ତ୍ରାସ ବୀର ଆତପତ୍ର ଶିରେ ଗର୍ଜନ୍ତି ।
ପଛରେ ଭଦ୍ରା ଦାୟିନୀ ସୁଭଦ୍ରା ଭୟଭଞ୍ଜନୀ
ପରିଚାରବାର ଘେନି ବିଜେ କରନ୍ତି ।
ଅଗ୍ରତରେ ସୁଦରଶନ ।
ରହି ରହି କରନ୍ତି ସେ ଶ୍ରୀଘ୍ରେ ଗମନ ॥ ୪ ॥

ବାଜେ ଘନ ଘଣ୍ଟାବଳି ମର୍ଦ୍ଦଳ ବୀର କାହାଳୀ
ମହୁରୀ ଦୋସରିମିଳି ମେଘା ସହିତେ ।
ଶଙ୍ଖ ନିଶାଣ ଟମକ ଏ ଆଦି ବାଦ୍ୟ ଅନେକ
ଶବଦରେ ତିନି ଲୋକ ପୂରେ ଈଶିତେ ।
ଜୟସ୍ୱନ ମିଶ୍ରିତ ହୋଇ
ଇତ୍ୟାଦି ମଙ୍ଗଳ ନାଦ କହି ନୁହଇ ॥ ୫ ॥

ଏମନ୍ତରେ କୃପାସିନ୍ଧୁ ଦୀନମାନବଙ୍କ ବନ୍ଧୁ
ଭଗତ କୁମୁଦ ଇନ୍ଦୁ ସଧୀର ହୋଇ ।
ବିଜେ କରିବା ଚାତୁରୀ ବଚନେକି କହିପାରି
କିବା ଗମଇ କେଶରୀ ଖେଳିଲା ହୋଇ ।
ଦଇତାପତି ସମୁଦାୟ
ବେଷ୍ଟିତ ହୋଇ ପ୍ରଭୁ କରନ୍ତି ବିଜୟ ॥ ୬ ॥

* * *

ପତିତଙ୍କୁ ଦରଶନ ଦେବାକୁ ପାଦେ ଗମନ
କରନ୍ତି ପ୍ରଭୁ ଯେସନ କୃପାନିଧାନ ।
ଯାହା ପାଇଁଟି ସତ୍ୱର କରନ୍ତି ଗତି ମନ୍ଥର
ଆସିବେ ଦେଖିବେ ନର କିୟେ ନିଧାନ
ସେ ଗତିକି ଲକ୍ଷି ନୁହଇ
ଏହି ରୂପେ ଧୀରେ ଧୀରେ ବିଜେ ଗୋସାଇଁ ॥୧୩ ॥

* * *

ଚାରି ପାଶରେ ଚାମର ଚାମର ଖଦି ନିକର
ଦିଶଇ ଶୋଭା ଅପାର ମନ୍ଦ ପବନେ ।
ଉପର ଘୋଡ଼ ରୋହିତ ଝଲି ଝାଲର ସହିତ
କହିବ ତହିଁ ଶୋଭିତ କେହ୍ନୁ ବଚନେ
ତଥି ଶିରେ ଶୋହେ କଳସ
ଅବଲୋକନ ମାତ୍ରକେ ହରେ ମାନସ ॥ ୨୦ ॥

ତଥି ଉପରେ ରଞ୍ଜିତ କଳସ ମହାରଜତ
କଳସ ହୋଇଥେ ରାଜିତ ତଥି ଶରୀର ।
ଉପରେ ବିରାଜେ ଚକ୍ର ଯେ ପୂର୍ବେ ନାଶିଲା ନକ୍ର
ଖଳ ପଟଳକୁ ବକ୍ର ରୁଚିରତର
ନିନ୍ଦା କରଇ ବିରୋଚନ
ତାର ଅପଘନ ଘନ ଦେଦିପ୍ୟମାନ ॥ ୨୧ ॥

* * *

ପୃଷ୍ଠ ପ୍ରାନ୍ତରେ ଠେକରା ବାଡ଼ ଦିଶେ ଅତି ତୋରା
ତଳେ ଝଲକଇ ଝରା ମଧ୍ୟେ ବଉଳା ।
ଶୋଭିତ ତଥି ତଳରେ ଚାରିପାଶ ହାଟକରେ
ଚାରୁ ଘଣ୍ଟି ସହିତରେ ଘାଗୁଡ଼ିମାଳା ।
ତହିଁ ଶୋଭା ମଣ୍ଡଣି ଯେତେ
ତାହା ବା ବଚନରେ ମୁଁ କହିବି କେତେ ॥ ୨୬ ॥

* * *

ସେ ଯେ ରଥର ଉପରେ ବିଜେ କରିଥିବେ ଧୀରେ
ହରି ସେ ଯେଉଁ ଜଳରେ ପ୍ରତି ବିମ୍ବଇ ।
ସେ ଜଳରେ କଲେ ସ୍ନାନ ହୁଅଇ ପାପ ନାଶନ
ୟଥିର ଏ ପୁଣ୍ୟମାନ କହି ନୁହଁଇ

ଗଙ୍ଗା ଗୟା ସିନ୍ଧୁ ମଜ୍ଜନ
ଯେ ଆଦି ମହିଁମା ସେ ରଥକୁ ନିଉନ ॥ ୨୮ ॥

* * *

ତହିଁ ଶୋଭା ଯେତେ ଯେତେ ତାହା ମୁଁ କହିବି କେତେ
ନିରଧି ବିଚି କି ଚିତେ କଳିଲା ପ୍ରାୟେ ।
କିଞ୍ଚିତ କ୍ରମୁ କେବଳ କହିଲି ତହିଁ ମଞ୍ଜୁଳ
ଦେଲେ କି ଉପମା ଜାଲ ସେ ସମ ହୋଏ ।
ଯେବଂ ଭୂତ ଯେଉଁ ସ୍ୟନ୍ଦନ
ତହିଁକି ବିଜେ କରନ୍ତି ମଧୁସୂଦନ ॥ ୩୩ ॥

* * *

ଯାହା ଚାରକୁ ଉଠିବା ତହିଁକି ଉପମା ଦେବା
ମତ୍ତ ମାତଙ୍ଗଜ କିମ୍ୱା ଡମ୍ୱର ହୋଇ ।
ଦରୀକି ପେଲି ପଶଇ ଯେହାକି କହି ନୁହଇ
ସୁଚରମଭର ଦେଇ ଭୃତ୍ୟଙ୍କଠାଇଁ
ଧୀର ଧୀର ହୋଇ ଉଠିବା
ନବ ପଞ୍ଚଲୋକେ ଯେହା କାହିଁ ଦେଖିବା ॥ ୩୬ ॥

* * *

ନୀଳାଦ୍ରି ଗଗନ ଚନ୍ଦ୍ର କଳୁଷ କରି ପାରିନ୍ଦ୍ର
ବୃନ୍ଦାରକ କୁଳ ଇନ୍ଦ୍ର ରଥସ୍ୱରୂପ ।
ଅନୁକ୍ଷଣେ କରେ ଧ୍ୟାନ ଶ୍ରୀ ଦିବ୍ୟସିଂହ ରାଜନ
ସକଳ ଗୁଣ ଭାଜନ ଭୂପତି ଭୂପ
ସାଧୁଜନେ ବୁଝୟେ ରସ
ବେନିବିଂଶ ପଦେ ଛାନ୍ଦ ହୋଇଲା ଶେଷ ॥ ୪୦ ॥



# ନୀଳଚକ୍ରେ ଉଡୁଛି ବାନା

## ରସାନନ୍ଦ ନବଘନ ଚାନ୍ଦ

ନୀଳଚକ୍ରେ ଉଡୁଛି ବାନା
ଚିତ୍ତ ଚଇତନ ହରି ଭଜନା ॥ ଘୋଷା ॥

ଉତ୍ତରୁ ଉଜାଣି ବହୁଛି ତ୍ରିବେଣୀ
ମଧ୍ୟରେ ଗଙ୍ଗା ଯମୁନା
ଜଳ ଜଳ ଜ୍ୟୋତି ଶୂନ୍ୟେ ବିରାଜୁଛି
ସେ ରୂପ ଦେଖିଲେ ହେବୁ ଭେଟଣା ॥ ୧ ॥

ପାଣି ପଙ୍କ ନାହିଁ ଫୁଟିଅଛି କଇଁ
କରୁଛି ଦିବ୍ୟ ବାସନା
ଅଦୃଶ୍ୟ ମୂରତି ଦୃଷ୍ଟିରେ ରହିଛି
ଯେହ୍ନେ ବାରମାଢ଼ ଅଟଇ ସୁନା ॥ ୨ ॥

ଅଥଳ କୂଳରେ ଦେଉଳ ରହିଛି
ଲହଡ଼ି କି ଟଳ ମଟଳ ସିନା
ପଣ୍ଡା ନାହିଁ ଯହିଁ ଭୋଗ ପାଉଅଛି
ଶୂନ୍ୟରେ ବାଜୁଛି ଘଣ୍ଟ ବାଜଣା ॥ ୩ ॥

ଗଙ୍ଗା ସେ ଯମୁନା ସରସ୍ୱତୀ ଧାର
ବୁଡ଼େ ପାରିବାକୁ ହୋଇଛି ମନା
ଭଣେ ରସାନନ୍ଦ ନବଘନ ଚାନ୍ଦ
ହଜାଇ ଦେଉଛି ମୋହ ଚେତନା ॥ ୪ ॥



# ଶ୍ରୀଜଗନ୍ନାଥ କୃପା ନିଧାନ ହେ

## ଦୀନବନ୍ଧୁ ରାଜ ହରିଚନ୍ଦନ

ଶ୍ରୀ ଜଗବନ୍ଧୁ କୃପା ନିଧାନ ହେ ।
କର ଦୀନରେ କୃପା ଅବଧାନ ହେ ।। ପଦ ।।

ସେବକ ଅପରାଧୀ ହେଲେ କରୁଣାନିଧି
କ୍ଷମା ତ ପ୍ରଭୁପଣ ବିଧାନ ହେ ।। ୧ ।।

ସାଧୁଜନଙ୍କ ସଙ୍ଗେ ମଜ୍ଜି କୀର୍ତ୍ତନ ରଙ୍ଗେ
ନ କଲି ତୁମ୍ଭ ଯାତ୍ରା ଲୋକନ ହେ ।। ୨ ।।

ତୁମ୍ଭ ଶ୍ରୀମୂର୍ତ୍ତି ଶୋଭା ଦେଖି ମୋ ନେତ୍ର ଲୋଭା
ନୋହିଲା ବ୍ୟର୍ଥ ହେଲା ନୟନ ହେ ।। ୩ ।।

ସେବା ବିନା ତୁମ୍ଭର ହେ କଞ୍ଜନେତ୍ର ମୋର
ଧିକ ରାଜ୍ୟପ୍ରଭୁତ୍ୱ-ଜୀବନ ହେ ।। ୪ ।।

ଆହେ ଆରତତ୍ରାଣ ହୁଅ ଦୁଃଖୀ ଶରଣ
ଦୀନବନ୍ଧୁ ଦୁଃଖ ବିମୋଚନ ହେ ।। ୫ ।।



# ନ ଗଲୁ ମନ କ୍ଷେତ୍ର ସ୍ଥଳକୁ

## ଭିକାରୀ

(ରାଗ-କଲ୍ୟାଣ)

ନଗଲୁ ମନ ! କ୍ଷେତ୍ରସ୍ଥଳକୁ
ଧନ ଦାରାସୁତ ଆବୋରି ବସିଛୁ
କେହି ନୋହେ ସଙ୍ଗ ଗଲାବେଳକୁ ।ଘୋଷା ।

ତୁଳସୀ ଚଉରା- ଠାରେ ନୃତ୍ୟ ଲୀଳା
ପ୍ରଦକ୍ଷିଣ କର ଯୋଡ଼ି କରକୁ
ମଧ୍ୟେ ପଞ୍ଚକୋଶୀ ପ୍ରଭୁଛନ୍ତି ବସି
ସେଠାରୁ ଦେଖ ତୁ ନୀଳଚକ୍ରକୁ
ଧ୍ୱଜା ଖଣ୍ଡକୁ ଚାହାଁ ଆଗକୁ
ଚଉକିଛନ୍ତି ଅଠରନଳାକୁ । ୧ ।

ସେ ଅଠର ନଳା ପଶ୍ଚିମରୁ ଜଳା
ବହି ଯା'ନ୍ତେ ପଥ ପୂର୍ବ ଭାଗକୁ
ଜନକପୁର ବାଲି ଆପେ ହରି ଚାଲି
ସେ ରେଣୁ ନମିଲେ ବ୍ରହ୍ମା ଶିବଙ୍କୁ
ଧାୟି ତାହାଙ୍କୁ ଚଉବାହାକୁ
ବଜାଏ ଡମ୍ବରୁ ଚଢ଼ି ଷଣ୍ଢକୁ ।। ୨ ।

ଧନ୍ୟ ବଡ଼ଦାଣ୍ଡ ସର୍ବପାପ ଖଣ୍ଡ
ସକଳ ତୀର୍ଥ ସେବନ୍ତି ତାହାକୁ
ଗୋରୁ ବିପ୍ର ମାରି ଗୁରୁ ପତ୍ନୀ ହରି
ସେ ଠାବକୁ ଗଲେ ବହେ ପାପକୁ

ତଳେ ହସ୍ତକୁ ଦେଇ ମସ୍ତକୁ
ଗଡ଼ଘାଲି ଶୁଅ ବଡ଼ ଦାଣ୍ଡକୁ । ୩ ।

ଛଣ ପୋତି ସାଧୁ ବୈଷ୍ଣବ ମହନ୍ତ
କରୁଛନ୍ତି ଲୀଳା ଗାଇ ନାମକୁ
କଡୁଆ ଗଞ୍ଜାଇ ବିଡ଼ା ବିଡ଼ା ଖାଇ
ଡାକୁଛନ୍ତି ସେ ମୁକତି ଧାମକୁ
ଚଉବାହାକୁ ଧାୟି ତାହାକୁ
ମିଳୁଛି ଅବଢ଼ା ଛେକ ବେଳକୁ । ୪ ।

ସେ ଅରୁଣ ସ୍ତମ୍ଭ ମେରୁ ସରି ଦମ୍ଭ
ଦେଖ ସିଂହଦ୍ୱାରେ ଗଜସିଂହକୁ
ବାଇଶ ପାବଚ୍ଛ ଲଗା ତହି ହସ୍ତ
କୈବଲ୍ୟ ପସରା ବେନି ପାଶକୁ
ତାହାଁ ଆଗକୁ ବିକା କିଣାକୁ
ବହି ନେଉଛନ୍ତି ବଡ଼ ଦାଣ୍ଡକୁ । ୫ ।

ସେଠାବରୁ ଧୀରେ କଳ୍ପବଟ ମୂଳେ
ଦେଖ ବଟକୁଟଶାୟୀ ପ୍ରଭୁଙ୍କୁ
ପଦାଙ୍ଗୁଳି ନେଇ ବଦନରେ ଦେଇ
ହସୁଛନ୍ତି ଚାହିଁ ମାତା ମୁଖକୁ
ତହିଁ ଆଗକୁ ଦକ୍ଷ ଭାଗକୁ
ପାହାରୀ ରହିଛି ଗଜମୁଖକୁ । ୬ ।

ମୁକତି ମଣ୍ଡପେ ବସିଛନ୍ତି ବିପ୍ରେ
ପଢୁଛନ୍ତି ବେଦ ସ୍ମୃତି ଶାସ୍ତ୍ରକୁ
ସେ ରୋହିଣୀ କୁଣ୍ଡ ସର୍ବପାପ ଖଣ୍ଡ
କାକ ପଡ଼ି ହେଲା ଚତୁର୍ଭୁଜକୁ
ଗଲା ସ୍ୱର୍ଗକୁ ଯାଅ ଆଗକୁ
ବିମଳା ଦେଖ ପଶ୍ଚିମ ଭାଗକୁ । ୭ ।

ସେଠାରେ ହିରଣ୍ୟ କୋପେ ନାରାୟଣ
ଚିନ୍ତା କର ବାରେ ହୃଦେ ତାହାଙ୍କୁ
ମାତା ସରସ୍ୱତୀ ତହିଁ ଆଗେଛନ୍ତି
ନମସ୍କାର କର ତାଙ୍କ ପାଦକୁ
ତହିଁ ଆଗକୁ ଉତ୍ତର ଦିଗକୁ
ମାତା ମହାଲକ୍ଷ୍ମୀ ଦେଖ ତାହାଙ୍କୁ । ୮ ।

ସେଠାବରୁ ଏକ କୁଣ୍ଡ ଯାଇ ଦେଖ
ତହିଁ ନେଇ କ୍ଷେପ ବୀଜ ଗର୍ଭକୁ
ପର ପ୍ରାୟ ପ୍ରଭୁ ଫିଙ୍ଗିଦେଇ ଅଛ
ଏ ନିନ୍ଦା ହୋଇବ ଆଉ କାହାକୁ
ଚଉ ବାହାକୁ ଚାହାଁ ଉର୍ଦ୍ଧ୍ୱକୁ
ଉଡୁଛି ପତାକା ତିନି ପୁରକୁ । ୯ ।

ଜଗମୋହନରେ ପଶି ଯାଅ ଥରେ
ଆଲିଙ୍ଗନ କର ପକ୍ଷୀରାଜକୁ
ରତ୍ନବେଦୀ ପରେ ଚାହିଁଦିଅ ଥରେ
ଦେଖ କଳାଧଳା ମୁଖ ଶୋଭାକୁ
ପାଦ ତଳକୁ ଲଗା ଶିରକୁ
ପରିକ୍ରମା କର ରତ୍ନ ବେଦୀକୁ । ୧୦ ।

ଆଗେ ରତ୍ନ ଦୀପ ଜଳେ ଦପ ଦପ
ଥୟ ହୋଇ ଲୟ କର ତାହାକୁ
କହଇ ଭିକାରୀ ସାହା କେହି ନାହିଁ
ଦଣ୍ଡେ ନ ଛାଡ଼ଇ ରହି ଧନ୍ଦାକୁ
ଧରି ନାମକୁ ଡାକେ ତୁମ୍ଭକୁ
ଅନ୍ତେ ନୋହୁ ଗତି ଯମପୁରକୁ । ୧୧ ।



# ଥକାମନ ଚାଲ ଯିବା

## ସାରିଆ ଭିକ

ଥକାମନ ଚାଲ ଯିବା
ଚକାନୟନ ଦେଖିବା
ଶଙ୍ଖ ନାଭି ମଣ୍ଡଳରେ
ବେନି ନେତ୍ର ପଖାଳିବା ॥ ଘୋଷା ॥

ବାଟରେ ବାଟ ମଙ୍ଗଳା
ଦେଖିବା ଅଠର ନଳା
ପାଞ୍ଚମନ ଏକମେଳା
ନରେନ୍ଦ୍ରେ ସ୍ନାନ କରିବା ॥ ୧ ॥

ପହଞ୍ଚିବା ବଡ଼ଦାଣ୍ଡେ
ସେ ରେଣୁ ପାଇବା ତୁଣ୍ଡେ
ଛତାତଳେ ରହି ଦଣ୍ଡେ
ସାଧୁଙ୍କ ସେବା କରିବା ॥ ୨ ॥

ସିଂହ ଦ୍ୱାରେ ଭିଡ଼ାଭିଡ଼ି
ବାଜୁଅଛି ବେତବାଡ଼ି
ଠେଲିଦେଇ ଯିବା ମାଡ଼ି
ଧକ୍‌କା ବାଜିଲେ ସହିବା ॥ ୩ ॥

ବାଇଶି ପାବଛେ ବିକା
ହେଉଛି କୈବଲ୍ୟ ଚଖା

ହାଣ୍ଡିକ ପଡ଼େ ସିଉଳା
ମନରଙ୍କା ଛଡ଼ାଇବା ॥ ୪ ॥

ଗରୁଡ଼ ପଛରେ ଦେଖ
ଦିଶୁଛି କଳା ଶ୍ରୀମୁଖ
କହଇ ସାରିଆ ଭିକ
ବଳରାମଙ୍କୁ କହିବା ॥ ୫ ॥



# କଳାକୃଷ୍ଣ କମଳ ଆଖି

## ଭରତ ଦାସ

କଳାକୃଷ୍ଣ କମଳ ଆଖି
ଡାକିଲେ ନ ଶୁଣ କାହିଁ ପାଇଁକି । ପଦ ।
ଶ୍ରୀ ନୀଳକନ୍ଦରେ ବିଜେ କରିଅଛ
ମିଛେ ଭଣ୍ଡିବାକୁ ଲୋଡୁ ଅଛକି ?
ଅହଲ୍ୟା ତାରଣ ଭୟ ନିବାରଣ
ବାଳିକି ମାରି ରଖିଲ ସୁଗ୍ରୀକି । ୧ ।

ମହା ବଳବନ୍ତ ବିଶ୍ରବାର ସୁତ
ଛେଦି ପକାଇଲ ଦଶଶିର କି,
ଲକ୍ଷେ ଯୋଜନରେ ଗଜ ଡାକ ଦେଲା
ତା ଡାକ ଶୁଣିଲ ପଶାଖେଳେ କି । ୨ ।

କୁରୁ ସଭା ତଳେ ଦ୍ରୌପଦୀ ଚିନ୍ତିଲା
ତାକୁ କୋଟି ବସ୍ତ୍ର ଦେଇଥିଲ କି,
ଭାରତ ଯୁଦ୍ଧରେ ଘଣ୍ଟ ଘୋଡ଼ାଇଣ
ରଖିଥିଲ ଭରତିଆ ପକ୍ଷୀ କି । ୩ ।

ସେ ଯୁଦ୍ଧରେ ଥରେ ଅର୍ଜୁନ ରଥରେ
ଆପଣ ସାରଥି ହୋଇଥିଲ କି,
ଭଣଇ ଭରତ ଆହେ ଜଗନ୍ନାଥ
ମୋ ମନେ ରହିବ ନୀଳାଚଳେ କି । ୪ ।



# ଚକାଡୋଳା ଚିକ୍କଣ କଳା

## କବି ଭରତ ଦାସ

ଚକାଡୋଳା ଚିକ୍କଣ କଳା
ଚଉବର୍ଗ ଦାନୀ ନନ୍ଦର ବଳ.
ଚାହିଁବା ମାତ୍ରକେ ଦୂରିତ ପଳାଏ
ସୋରିକ୍ଷେ ନ ରହେ ସଂସାର-ଜ୍ୱାଳା । ଘୋଷା ।

ଚମତ୍କାର ବେଶ ପ୍ରଭୁ ହୃଷୀକେଶ
ଚରଣ ଚାପନ୍ତି ଯା'ର କମଳା,
ଚଉଦ ବ୍ରହ୍ମାଣ୍ଡଯାକର ବଲ୍ଲଭ
ଚମ୍ପା ଦୟଣିଆ ସେ ଭାବ ଭୋଳା । ୧ ।

ଚାରିଧାମେ ସାର ଶ୍ରୀପୁରୁଷୋତ୍ତମ
କ୍ଷେତ୍ରବର ନାମେ ଯେବଣ ଖଳା,
ଚଟକ ନୀଳକନ୍ଦର ମୃଗପତି
ଭଲା ଭିଆଇଲେ ଭକତ ମେଳା । ୨ ।

ଚଢ଼ି ନନ୍ଦିଘୋଷେ ଅତ୍ୟନ୍ତ ଉଲ୍ଲାସେ
ଲଗାନ୍ତି ଟି ରଥ ଉତ୍ସବ ଲୀଳା,
ଚନ୍ଦନ ପାଟୀ କି ମନୋହର ଦିଶେ
ଅଳକ ଆବଳି କୁଣ୍ଡଳ ଖେଳା । ୩ ।

ଚତୁର୍ଦ୍ଧା ମୂରତି ଜଗତର ପତି
ଚତୁର ସାମନ୍ତ ସେ କଳା ଧଳା,
ଚିତ୍ତରଞ୍ଜନିଆ ଗର୍ବ ଗଞ୍ଜନିଆ
ଚରଣେ ଭରତ ମତ୍ତ ଭ୍ରସଳା । ୪ ।



# ଅନାଥ ନାଥଙ୍କୁ

ହୃଦାନନ୍ଦ ଦାସ

ଅନାଥନାଥଙ୍କୁ
ଶ୍ରୀଜଗନ୍ନାଥଙ୍କୁ
ଧ୍ୟାନ କରହୋ ମନ !
ଶ୍ୱେତ ପଦ୍ମନେତ୍ରଙ୍କୁ । ଘୋଷା ।

ଧନ୍ୟ ସେ ନିଳାଦ୍ରି ଡ଼ୋଳା   ଭବ ସାଗରକୁ ଭେଳା
ଉଦେ, ନାହିଁ ଅସ୍ତକଳା   ଧ୍ୟାନେ ସଦାଶିବ ଭୋଳା
ମନକୁଗଲା ହୋ,ସେ ନେତ୍ରେ ମିଳା ହୋ
ହେଳା କଲେ ପାଇବୁ ତୁ ଦଣ୍ଡଧର ଘାତକୁ । ୧ ।

ଧନ୍ୟ ସେ ଚାରୁ ଭ୍ରୂଲତା   ସୁଧାସିନ୍ଧୁ କଳ୍ପଲତା
ଚାହିଁଣ ଯା ଉର୍ଦ୍ଧ୍ୱରେତା   ଧ୍ୟାନେ କରୁଛନ୍ତି ଚିନ୍ତା
ଚନ୍ଦନ ଚିତା ହୋ, କେଡ଼େ ଶୋଭିତା ହୋ
କି ବା ସବିତା ଉଦେ  ହୋଇଛି ଜଗତକୁ । ୨ ।

ଫୁଟିଛି ଶ୍ୱେତ କମଳ   ସର୍ବଦା କାଳେ ଉଜ୍ଜ୍ୱଳ
ବାସନାରେ ହୋଇ ଭୋଳ   ଚୁମ୍ବଇ  ଭକ୍ତ-ଭ୍ରସଳ
ପାଇ ଶୀତଳ ହୋ,ନ ଛାଡ଼େ କୋଳ ହୋ
ଅମୃତ ପାନେ ସର୍ବଦା ବଳାଇଛି ଚିତ୍ତକୁ । ୩ ।

ସୁଗନ୍ଧ କୁସୁମ ମାଳେ   ବାନ୍ଧିଣ ଅଛନ୍ତି ଗଳେ
ଇନ୍ଦ୍ରଧନୁ ଦର୍ପ ଦଳେ   ମୟୁରଚନ୍ଦ୍ରିକା ଚୂଳେ
କେଡ଼େ ସୁଢ଼ଳେ ହୋ,ବାମକୁ ଢଳେ ହୋ
ସେ ପାଦ ପଦ୍ମରେ ହୃଦାନନ୍ଦ ରଖେ ଚିତ୍ତକୁ  । ୪ ।



# ମେଘମାଳାକୁ ନିନ୍ଦେ କଳାକୁ

## ହୃଦାନନ୍ଦ ଦାସ

ମେଘ-ମାଳାକୁ ନିନ୍ଦେ କଳାକୁ
ଚାହାଁ ବାରେ ମନ ଚକାଡ଼ୋଳାକୁ ॥ଘୋଷା ॥
ଏଭବ-ସରିତେ ତରିଗଲେ ଭକ୍ତେ
ଆଶ୍ରେ କରି ଯା'ର ନାମ-ଭେଳାକୁ
ସଦାଶିବ ହର ହୋଇଲେ ଅମର
କୋଳେ ଧରିଛନ୍ତି ଗିରିବାଳାକୁ
ଗୁନ୍ଥି ମାଳାକୁ, ପିନ୍ଧି ଗଳାକୁ
ନାମ ଜପୁଛନ୍ତି କଳା ଧଳାକୁ ॥ ୧ ॥

ସତ୍ୟରେ ଶ୍ରୀପତି ସମୁଦ୍ରକୁ ମନ୍ଥି
ତହିଁରୁ ଜାତ କଲେ କମଳାକୁ
ଦେବାସୁର ଯୁଦ୍ଧେ ଅମୃତ ବିବାଦେ
ମୋହିନୀ ହୋଇଲେ ଦେବ ଛଳାକୁ
ରାହୁ ଗଳାକୁ ଛେଦି ହେଳାକୁ
ମୋହ କଲେ ମହାଦେବ ଭୋଳାକୁ ॥ ୨ ॥

ତ୍ରେତୟା ଯୁଗରେ ରାମ ଅବତାରେ
ଭଜମନ ବାରେ ରଘୁବଳାକୁ
ପାଇ ସୀତାଛଳ ଘେନି କପିବଳ
ସିନ୍ଧୁରେ ବାନ୍ଧିଲେ ଶିଳା ଭେଳାକୁ
ଜାତ ଖେଳାକୁ,ରଣ ସ୍ଥଳାକୁ
ରଣେ ଛେଦିଲେ ବିଶ୍ରବା ବଳାକୁ ॥ ୩ ॥

ଦ୍ୱାପର ଯୁଗରେ ଜନ୍ମି ଗୋପପୁରେ
ଓପାଡ଼ି ପକାଇଲେ ଯାମଳାକୁ
କାଳିନ୍ଦୀରେ ପଶି କାଳୀଦର୍ପ ଧ୍ୱଂସି
ନିବାରିଲେ ମହା ବିଷ ଜ୍ୱାଳାକୁ
ଯାଇ ମେଳାକୁ, ରଙ୍ଗସ୍ଥଳାକୁ,
କପଟେ ମାଇଲେ ସେ ମଉଳାକୁ ॥୪ ॥

ଏ କଳି ଯୁଗରେ କଳ୍ପବଟ ମୂଳେ
ମାଡ଼ି ବସିଛନ୍ତି ଲକ୍ଷେ ଶିଳାକୁ
ବିକାଇଲେ ଅନ୍ନ ନେଲେ ଜାତିଧର୍ମ
କେହି ନ ଖୋଜଇ କାହା ଧର୍ମକୁ
କ୍ଷେତ୍ର ସ୍ଥଳାକୁ, ମୁକ୍ତି ଖଳାକୁ
ଭାବେ ହୃଦାନନ୍ଦ ସନ୍ଥ ମେଳାକୁ ॥ ୫ ॥



# ଜଗବନ୍ଧୁ ରଥାଙ୍ଗ ପାଣି

## ହରେକୃଷ୍ଣ ସିଂହ

ଜଗବନ୍ଧୁ ରଥାଙ୍ଗ ପାଣି
ରତ୍ନ ସିଂହାସନ ମଉଡ଼ମଣି । ଘୋଷା ।
ମହୋଦଧି ତୀରେ ଶ୍ରୀ ନୀଳ କନ୍ଦରେ
ସଙ୍ଗେ ଘେନି ରଙ୍ଗେ ଭାଇ ଭଉଣୀ
କରିଛ ବିଜୟ ପ୍ରଭୁ ଦୟାମୟ
କୋଟି-ମରସିଂହ-ବିକ୍ରମ ଠାଣି ॥ ୧ ॥

ପତିତଙ୍କ ହିତେ ଅନୁରାଗ ଚିତେ
ହସି ହସାଉଛ ଜଗତପ୍ରାଣୀ
ଅତି ମନୋହର ବେଶ ନଟବର
ଚକାନୟନରେ ମୃଦୁ ଚାହାଣି ॥ ୨ ॥

ଅପୂର୍ବ ମୂରତି ପଦ୍ମାଳୟା ପତି
ଅଗତିଙ୍କ ଗତି ବିଶ୍ୱବିନ୍ଧାଣି
ପାତକୀମାନଙ୍କ ଅଶେଷ ପାତକ
ପକାଉଛ ଚକ୍ର ଦାଢ଼ରେ ହାଣି ॥ ୩ ॥

ଆହେ ଆର୍ତ୍ତତ୍ରାଣ ! ଗରୁଡ଼ ଆସନ
ମୁଁ କି ଜଣାଇବି ନ ସ୍ଫୁରେ ବାଣୀ
ହରେକୃଷ୍ଣ ସିଂହ ଯୁବରାଜ ଲୋହ-
ହୃଦୟ ଦ୍ରବାଇ ନ କଲ ପାଣି ॥ ୪ ॥



# ଜୟଜୟ ଜଗନ୍ନାଥ ମହାବାହୁ

## ବୈଦ୍ୟନାଥ ଦ୍ୱିଜ

### (ରାଗ ହନୁମତ ତୋଡ଼ି)

ଜୟ ଜୟ ଜଗନ୍ନାଥ ମହାବାହୁ
ଜଗବନ୍ଧୁ ବୋଲି ମୋ ଜୀବନ ଯାଉ । ଘୋଷା ।
ଆରତ ତାରଣ ଶରଣ ରକ୍ଷଣ
କାରଣେ ବାନା ଉଡ଼ାଉ
ମୋର ପଛେ ଯାଉ ପ୍ରାଣ କେଭେ ନ ମିଳୁ ଦୂଷଣ
ଭବଭୟ ବାନାକୁ ତୋ ନିନ୍ଦା ନୋହୁ । ୧ ।

ଭରତିଆ ପକ୍ଷୀ ଘଣ୍ଟ ଢାଙ୍କି ରଖି
ଜୀବଦାନ ଦେଲ ଯେଉ
ମୋ ସଙ୍କଟ ଟାଣୁଁ ବଳି ରଖ ଆହେ ବନମାଳି !
ତୋତେ ଭଲ ହେବ ମୁଁ କି ମଲେ ଆଉ । ୨ ।

ତୃଷାର୍ତ୍ତ ଯେ ଜନ ହାରେ କି ଜୀବନ
ଗଙ୍ଗା କୂଳେ ଥାଉ ଥାଉ
ଶିରୀଷ ପୁଷ୍ପରେ ଯେବେ କୁଳିଶ ବରଷା ତେବେ
ମୋତେ ମାରି କାଳେ କାଳେ ଯଶ ଥାଉ । ୩ ।

ଆହେ ପଦ୍ମମୁଖ ଦେଲ ଯେତେ ଦୁଃଖ
ଏହା କାହା ଦେହ ସହୁ
ଦ୍ୱିଜ ବୈଦ୍ୟନାଥ ବୋଲେ ଏକାଳରେ ନ ରଖିଲେ
ପାପ ଶରୀରକୁ ମୋର ଅଗ୍ନି ଖାଉ । ୪ ।



# ପତିତପାବନ ବାନା ଆଉ କେତେବେଳକୁ

## ବୀରକେଶରୀ ଦେବ

(ରାଗ-କାମୋଦୀ)

ପତିତପାବନ ବାନା ଆଉ କେତେ ବେଳକୁ
ଭାସିଗଲି ଭବଜଳେ ନାବ ଦିଅ କୂଳକୁ । ଘୋଷା ।

ରୋପିବାର ବୃକ୍ଷ ଗୋଟି    କାଟୁଅଛ ମୂଳକୁ
ତିନିପୁରେ ଅପକୀର୍ତ୍ତି    ହେବ ଆଦିମୂଳକୁ ।୧ ।

ଦୂରେ ଥାଇ ଡାକ ଦେଲେ    ଡେରିଥାଅ କର୍ଣ୍ଣକୁ
ନିକଟରେ ନ ଶୁଣିଲେ    ମୋ କର୍ମ ଅବଳକୁ । ୨ ।

ଲକ୍ଷେ ଯୋଜନରେ ଗଜ    ଡାକ ଦେଲା ତୁମ୍ଭଙ୍କୁ
ନକ୍ର ନାଶିବାକୁ ଚକ୍ର    ଦେଲେ ପେଶି ଜଳକୁ । ୩ ।

ନକ୍ଷତ୍ର-ଦିହୁଡ଼ି ଜଳେ    ସନ୍ଧ୍ୟାଦୀପ ବେଳକୁ
ଲମ୍ବିଛି ଦୟଣା ମାଳ    ପଦ୍ମପାଦ ତଳକୁ । ୪ ।

ଯୋଗୀଜନ ମାନେ ହୃଦେ ଧ୍ୟାଉଛନ୍ତି ଯାହାକୁ
ଭଣିଲେ ବୀରକେଶରୀ    ଆଶା ପାଦ ତଳକୁ । ୫ ।



# ଦୀନ ବାନ୍ଧବ ହେ

## ବୀରକେଶରୀ ଦେବ

ଦୀନ ବାନ୍ଧବ ହେ,ଭୁଜତଳେ ମୋତେ ରଖ
ବିପୁଳ ଭୁଜ ବିସ୍ତାରି ଦେଲେ
ଅନ୍ୟ ଛାର କି ଦିଅନ୍ତା ଦୁଃଖ ॥ ଘୋଷା ॥

ଯେ ଗଜରାଜ ବିପତ୍ତି ପଡ଼ି
ପ୍ରଭୁ ନିତ୍ୟଯେ ଇଚ୍ଛି ନାହିଁ
ଭୁବନ ମୋହନ ଚକା ନୟନକୁ
ଯେତେବେଳେ ଦେଲି ଚାହିଁ ॥ ୨ ॥

ଯହିଁ ଥିଲେ ଥିଲି ଯହିଁ ଗଲେ ଗଲି
ମୋହର କାହାକୁ ଭୟେ
ଏକା ମାତ୍ର ମୋର ନୀଳାଦ୍ରି ସିଂହକୁ
କରିଥାଇ ଅବଲୟେ ॥ ୨ ॥

ଛାଡ଼ି ଦେଲେଣି ମୁଁ ସକଳ ଭରସା
ତୁମରି ପ୍ରତି ଆଶାରେ
ତୁମ୍ଭେ ନ ରଖିଲେ ଭାସି ମୁଁ ଯାଉଛି
କି ବୋଲିବେ ଜଗତରେ ॥ ୩ ॥

ଚଢ଼ିଥିବି ନନ୍ଦିଘୋଷ ମହାପ୍ରଭୁ
ଥିବି ନିଜନ ସେବାରେ
ଶ୍ରୀ ବୀରକିଶୋର ମହାରାଜାବୋଲେ
ସୁଦୟା ନୋହିଲା ମୋରେ । ॥ ୪ ॥



# ଦୁଃଖ ନାଶନ ହେ ! ସୁଖ ନ ପାଇଲି ଦିନେ

## ବୀରକେଶରୀ ଦେବ

ଦୁଃଖ ନାଶନ ହେ ! ସୁଖ ନ ପାଇଲି ଦିନେ ।
ବେଳୁ ବେଳୁ ଦୁଃଖ ପ୍ରବଳ ହେଉଛି
ବିଜୁଳି ଯେସନେ ଘନେ ॥ ଘୋଷା ॥

ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ଲକ୍ଷ୍ମୀ ସାଇଁ ।
ଅରକ୍ଷିତକୁ ତ ରଖିଦେଉନାହଁ
ଭବ ଜଳରେ ଭସାଇ ॥ ୧ ॥

ଆହେ ହରି ! ମୁହିଁ ସହି ତ ନପାରି
ଅନ୍ତର ବେଦନା ମାନ ।
ଯେଣୁକରି ତୁମ୍ଭେ ଦୟା ନ କଲ ହେ
ପ୍ରଭୁ ଆତଙ୍କ ନାଶନ ॥ ୨ ॥

ଏଡ଼େ ନିଷ୍ଠୁର ତ ହେଲ ମୋହଭଳି
ଦୁଃଖୀଜନ ହୀନ ଠାରେ ।
ଦୀନଜନମାନେ ଗୁହାରି କରନ୍ତି
ନ ଶୁଣ କି ତୁମ୍ଭେ ବାରେ ॥ ୩ ॥

ପୋତୁ ମୋ ଅଦୃଷ୍ଟ ଅନ୍ନବସ୍ତ୍ର କଷ୍ଟ
ଏଡ଼େବଡ଼ ପ୍ରଭୁ ଥାଉଁ ।
ଭଣନ୍ତି ବୀରକିଶୋର ମହାରାଜ
ପଦ୍ମପାଦେ ଚିତ୍ତ ରହୁ ॥ ୪ ॥



# ଭୁଜତଳେ ମୋତେ ରଖ ମହାବାହୁ !

## ବୀରକେଶରୀ ଦେବ

(ରାଗ-ସାବେରୀ ଆଡ଼ତାଳୀ ବା ଚାପତାଳ)

ଭୁଜତଳେ ମୋତେ ରଖ ମହାବାହୁ !
ବାହୁତଳେ ମୋତେ ରଖ ।
ବିପୁଳ ଭୁଜ ବିସ୍ତାରି ଦେଲେ ଛାର
କି କରି ପାରିବ ଦୁଃଖ ॥ ଘୋଷା ॥

ସଜ ହୋଇଥିବ ନନ୍ଦିଘୋଷ ରଥ
ମୁଁ ଥିବି ତୁମ୍ଭ ସେବାରେ ।
ତୁମ୍ଭେ ଦୀନବନ୍ଧୁ ! ନିର୍ଦ୍ଦୟ ହୋଇଲେ
କି ବୋଲିବେ ଏ ସଂସାରେ ॥ ୧ ॥

ଏ ଗଜରାଜି-କ୍ଷିତିପତି ସମ୍ପତ୍ତି
ରତିଏ ରୁଚଇ ନାହିଁ ।
ଭୁବନ ମୋହନ ଚକା ନୟନକୁ
ଯେତେବେଳେ ଦିଏ ଚାହିଁ ॥ ୨ ॥

ଦିନକୁ ଦିନତ ଦୁଃଖ ଅତିରେକ
ସୁଖ ତ ଦିଶଇ ନାହିଁ ।
ଭାସି ଯାଉଅଛି ଏ ଭବ ସାଗରେ
ରକ୍ଷାକର ଭାବଗ୍ରାହୀ ॥ ୩ ॥

ଶ୍ରୀକ୍ଷେତ୍ର ନବରେ ମହା ଐଶ୍ୱର୍ଯ୍ୟରେ
ଥିଲେ ହେଁ କମଳା ସାଇଁ ।

ବାଇଶି ପାବଚ୍ଛ ନ ଉଠିବା ଯାଏଁ
ଆନନ୍ଦ ନ ପାଏ କାହିଁ ॥ ୪ ॥
ସେବାରୁ ଅନ୍ତର ହେଲି ଯେବେ ପ୍ରଭୁ
ଏ ପ୍ରାଣ ଥିବ କିପାଇଁ ।
ଉହ୍ଲାଇ ନଦିଅ କିପାଁ ମୋ ମଥାରୁ
ଜଞ୍ଜାଳ ଭାର ଗୋସାଇଁ ॥ ୫ ॥
ମୁଁ ଛାର ପତିତ ଭରସା ରଖିଛି
ଶ୍ରୀରଙ୍ଗା ଚରଣ ତଳେ ।
ଶ୍ରୀ ବୀର କେଶରୀ ମହାରାଜା ଭଣେ
ଦୟାକର·ଏତେ ବେଳେ ॥୬ ॥



# ଜଗନ୍ନାଥ କଲେ ଯା ଅନାଥରେ

## ବୀରକେଶରୀ ଦେବ

ଜଗନ୍ନାଥ କଲେ ଯା ଅନାଥରେ
ଆଉ କେ ହରିବ ଦୁଃଖ ।
ଜଗତେ ଏ ପରା ପଡ଼ିଗଲେ ଧରା,
କି ବୋଲିବେ ପଦ୍ମମୁଖ ॥ ପଦ ॥

ଯୋଗୀ ଅନୁରାଗୀ କହନ୍ତି କି ଲାଗି
ଶରଣ ରକ୍ଷଣ ବାନା ।
ଅନ୍ଧକାର ଘୋଟି ଗଲେ ବକ୍ଷ ଫାଟି
ନ ଚାହାନ୍ତି ଥରେ ଅନା ॥୧ ॥

ସାହା ଚଉବାହା ନୋହିଲେଟି ଯାହା
ଦେଖି ମୋ ଜୀବନ ବ୍ୟଥା ।
ଚଉଦିଗ ପୁରି ଯିବଟି ପ୍ରସରି
ଲୁଚିବ କାହିଁ ଏ କଥା ॥ ୨ ॥

ଯେହୁ ଅପବାଦ,ନ ମଣି ପ୍ରମାଦ
ମେଣ୍ଟାଇବ ମନ ସାଧ
ନାହିଁ ପ୍ରତିକାର,ହୃଦୟ ମାତର
ଲଭୁଥିବ ଅବସାଦ ॥ ୩ ॥

ଗଜପତି ବୋଲେ ପ୍ରଭୁ ଯେବେ ଭଲେ
ନ ଶୁଣିବେ ମୋ ଗୁହାରି
ପୋଡୁ ମୋ ନିଶ୍ୱାସ,ପୋଡୁ ମୋ ବିଶ୍ୱାସ
ବଡ଼ ଦୟାବନ୍ତ ହରି ॥ ୪ ॥



# କାହାକୁ ମୁଁ କରିବଇ ସାକ୍ଷୀ

## ସାନନ୍ଦ ଦ୍ୱିଜ

(ରାଗ ଜୟନ୍ତ)

କାହାକୁ ମୁଁ କରିବଇ ସାକ୍ଷୀ
ହେ ଚକାଆକ୍ଷି !  । ଘୋଷ ।

ଡାକିଲେ ନାମ ଆରତେ ନ ଶୁଣ କିପାଁ ତୁରିତେ
କି ବିଚାରି ହୃଦଗତେ, ନ ଡେର ଶ୍ରବଣ ପଥେ ।
ଜପି ନାମ କଣ୍ଠ ଗଲା ସୁଖି ହେ । ୧ ।

ମୋ ଶୋଷ ଘଟ ମାତର ତୁମ୍ଭ କୃପା ଅକୂପାର
ରଖିଛି ରଙ୍କ ଉଦର ତୃଷା ନ ହରଇ ମୋର
ହେଉଅଛ ନିଷ୍ଠୁର କାହିଁକି ହେ. ।୨।

ନେବ ବୋଲି କିଛି ଲାଞ୍ଚ ମନେ କରିଅଛ ପାଞ୍ଚ
ସେ କଥା ମନରୁ ମୁଞ୍ଚ ବଳିଗଲା ମନ ସ୍ୱଚ୍ଛ
ଗୋପପୁରେ ପୟ-ସର ଚାଖି ହେ । ୩ ।

ପାଇ ନାନା ଉପବନ ହେବାରେ ହରଷ ମନ
ଅଳସ କି ଅପଘନ ଘାରିଲା ନିଦ୍ରା ନୟନ
ନ ଶୁଣିଛ ସେ କାରଣୁ ନିକି ହେ ।୪ ।

କହଇ ସାନନ୍ଦ ଦ୍ୱିଜ ଆହେ ପ୍ରଭୁ ଚତୁର୍ଭୁଜ
ଗଲାନି କି ପୂର୍ବ ତେଜ ଦୁଃଖି ଦୁଃଖ ଯା ନ ବୁଝ
ହୋଇବାରୁ ନୀଳାଚଳେ ସୁଖି ।୫ ।



# କରୁଣା କର ଆହେ

ସାନନ୍ଦ ଦ୍ୱିଜ

(କଳହଂସ କେଦାର ଛାନ୍ଦ ବୃତ୍ତ )

କରୁଣକର ! ଆହେ କରୁଣା କର
ଆରତେ ଡାକୁଅଛି ଯୋଡ଼ିଣ କର ହେ
ଖେଦ ଜଞ୍ଜାଳ ମୋର ହର ସତ୍ୱରେ
ଖଟି ମୁଁ ଅଛି ପରା ତୁମ୍ଭ ପୟରେ ହେ । ୧ ।

ଏ ଘୋର ସଂକଟରୁ କର ଉଦ୍ଧାର
ଉଆଁସଅନ୍ଧାର ତ ଚଉଦିଗର ହେ
ଘୋଟିଲା ସରି ମୋରେ ଦିଶେ ମୁକର
କେଣିକି ଯିବି ନାହିଁ ଉପାୟ ମୋର ହେ । ୨ ।

କରୁଛି ନିବେଦନ ତୁମ୍ଭ ଛାମୁରେ
ଭାସିଯାଉଛି ପଡ଼ି ଶୋକସାଗରେ ହେ
ବେଳକୁ ବେଳ ମୋର ବଢ଼ିଲା କଷ୍ଟ
ତୁମ୍ଭେ ତ ନିଶ୍ଚିନ୍ତରେ ଦେଖୁଛ ହଟ ହେ । ୩ ।

ହେ ଚଉବାହା ! ମୋର ଆଉ କେ ସାହା
କଷ୍ଟ ଉପରେ କଷ୍ଟ ଦେଉଛ ଯାହା ହେ
ରଖିଲେ ରଖ ଅବା ମାରିଲେ ମାର
[illegible] କେଉଁଠି [illegible] ହେ । ୪ ।

# ମଣିମା ! ଶୁଣିମା ହେଉ ଗରିବ ଡାକ

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

ମଣିମା ! ଶୁଣିମା ହେଉ ଗରିବ ଡାକ ।
ନିରକ୍ଷ ଜନକୁ ରଖ ପଙ୍କଜ ମୁଖ ॥ ଘୋଷା ॥

କୃପା ସାଗର କାହିଁକି
ମୋ ବେଳକୁ ଗଲ ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେଁ ସଳଖ ॥ ୧ ॥

ଆତଙ୍କ ନାଶନ ବାନା
ନ ଶୁଣ ଭୃତ୍ୟ ବେଦନା
ଏବେ ହୋଇଯିବ ମନା କେ ଦେବ ଡାକ ॥ ୨ ॥

ଦାସ ଯେବେ ନାଶ ଯିବ
କ୍ଷିତିରେ ଅକୀର୍ତ୍ତି ହେବ
କୀରତି-ଚନ୍ଦ୍ରରେ ଲାଗିଯିବ କଳଙ୍କ ॥ ୩ ॥

କହେ ସଦାନନ୍ଦ ଛାର
ନାହିଁ ଆନ ପ୍ରତିକାର
ଏ ଦୀନ ଅବସ୍ଥା ମୋର ନେତ୍ରେ ନ ଦେଖ ॥୪ ॥



# ଜୟ ନୀଳାଦ୍ରି ବିହାରୀ

## ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

ଜୟ ନୀଳାଦ୍ରି ବିହାରୀ
ଭକତଙ୍କ ହିତେ ବିଜେ କରିଅଛ
କରେ ଶଙ୍ଖ ଚକ୍ର ଧରି ॥ ପଦ ॥

ସୀତା ମାତାଧର-ସୁତା ବାହନର
ଭକ୍ଷ ଡାକିଲା ଆରତେ
ରଥାଙ୍ଗ ପେଶିଲ ଅରାତି ନାଶିଲ
ରକ୍ଷା କରିଛ ତ୍ୱରିତେ ॥ ୧ ॥

ନାକଲୋକ ରାଜ ତନୁଜ ଅଗ୍ରଜ
ଜାୟା ଚିନ୍ତିଲା ଆରତେ
ଲଜ୍ଜା ନିବାରଣ ଲଜ୍ଜାରୁ ତାରିଣ
ରକ୍ଷା କରିଛି ତ୍ୱରିତେ ॥ ୨ ॥

ଗିରୀଶ ଦୁଲାଳ-କନିଷ୍ଠ ମାତୁଳ
ସଙ୍ଗେ ମଇତ୍ର ହୋଇଲ
ବାମନାରି ଅରି ଆତ୍ମଜକୁ ହରି
ଏକା କାଣ୍ଡକେ ନାଶିଲ ॥ ୩ ॥

ସମ୍ବରାରି-ପର-ଧରାଧର ଶୂର-
ବଂଶେ ଜାତ ଅଜାମିଳ
ଅନ୍ତଃକାଳେ ପୁତ୍ର ନାମ ଜପିବାରେ
ବଇକୁଣ୍ଠେ ଠାବ ଦେଲ ॥ ୪ ॥

ବୋଲେ ସଦାନନ୍ଦ ବେନିଜନ୍ମ ମନ୍ଦ
ମୁଁ ଅଜାମିଳୁ ଅଧିକ
କେକୀପ୍ରିୟ-ପୁଷ୍ପ-ଉଦ୍ଭବ-ବାନ୍ଧବ
କୁମାର ଭୟରୁ ରଖ ॥ ୫ ॥



# ମନବୋଧ ଚଉତିଶା

## ଭକ୍ତଚରଣ ଦାସ

(ରାଗ-କଳହଂସ କେଦାର)

କହଇ ମନ ଆରେ  ମୋ ବୋଲ କର ।
କଳା ଶ୍ରୀମୁଖ ବାରେ ଦେଖିବା ଚାଲ ରେ ॥
କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଟ ।
କି ଘେନି ଯିବୁ ତୁହି ଛୁଟିଲେ ଘଟ ରେ ॥ ୧ ।

ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରାକାଠି ।
ଖାଉଣଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ॥
ଖଟ ପଲଙ୍କେ ମନ ଶେଯାଇ ଶୋଉ ।
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ  ॥ ୨ ।

ଗଲେଣି ତୋ ସଙ୍ଗତୁ ଯେତେକ ଜନ ।
ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ ରେ ॥
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ ।
ଗାଢ଼େ ମଜ୍ଜିଣ ନିତ୍ୟେ ଧନ ଅର୍ଜିଲୁ ରେ ॥ ୩ ।

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ ।
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ॥
ଘର-ଘରଣୀ ଦେହ କିଳାଉଥିବ ।
ଘେନି ଜ୍ଞାତି କୁଟୁମ୍ବ ଶୁଦ୍ଧ ହୋଇବ ରେ ॥ ୪ ।

ଉଦ୍ଧାର ହେବୁ ଯେବେ ଭବ ସାଗରୁ ।
ଉପାୟ କରି ଏବେ ଭଜ ଶ୍ରୀଗୁରୁ ରେ ॥
ଊଣା ହେଉଛି ଦିନୁଁ ଦିନ ଆୟୁଷ ।
ଆଉ ଏଣିକି ଅଛି କେତେ ବୟସ ରେ ॥ ୫ ।

ଚିତ୍ର ପ୍ରତିମା ପ୍ରାୟ ଦିଶୁ ସୁନ୍ଦର ।
ଚିରି ଭିତରେ ଦେଖ କି ନାରଖାର ରେ ॥
ଚର୍ମ ଘେରିଛି ସିନା ଚଉରାଶିକି ।
ଚିତ୍ତ ତୁ ଦିନ ନୀଳଗିରିବାସୀଙ୍କି ରେ ॥୬ ।

ଛାର ଦେହକୁ ମନ କରୁଚୁ ସଜ ।
ଛନ୍ଦ କପଟ ତେଜି ଗୋବିନ୍ଦ ଭଜ ରେ ॥
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା ।
ଛ'ଖଣ୍ଡି କାଠ ତୋର ହୋଇବ ଲୋଡ଼ା ରେ ॥ ୭ ।

ଯମ ଯେ ନ ଜାଣଇ ବାଳୁତ ଯୁବା ।
ଜୀଇବୁ ବୋଲି ମନ କରିଛୁ ଅବା ରେ ॥
ଜଣେହେଁ ଥି କେହି ନାହିଁ ଅମର ।
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ ॥ ୮ ।

ଝୋଲା କନ୍ଥା ପାଛୋଡ଼ା ପିନ୍ଧାକୁ ରସୁ ।
ଝାଡ଼ ସଂସାରେ ମନ ଝସାଇ ପଶୁ ରେ ॥
ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ ।
ଝଡ଼ିଲା ପତ୍ର ବୃକ୍ଷେ ଲାଗିଛି କାହିଁ ରେ ? ॥ ୯ ।

ନିଶି ଦିବସେ ଥୟ ନୋହୁ ନା ମନ ।
ନିଦ୍ରାରେ ଦେଖୁ ଅଛୁ ଯଥା ସପନ ରେ ॥
ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା ।
ନାମ ମାତ୍ର ଅଟଇ ପଥକୁ ସଖାରେ ॥ ୧୦ ।

ଟାଣ କରିଛୁ ମନ ! ସବୁ ମୋହର ।
ଟଳି ପଡ଼ିଲେ କେହି ନୋହେ କାହାର ରେ ॥
ଟେରା ଭିତରେ ଯେହ୍ନେ ଅପୂର୍ବ ନାରୀ ।
ଟୋପ ଚଉରା ଅଛି ତୋ ଦେହେ ପୂରି ରେ ॥ ୧୧ ।

ଠିକେ ମୁଁ କହୁଅଛି କର ମୋ କଥା ।
ଠିକେ ତୋ ଦେହେ ଅଛି ଶୂନ୍ୟ ଦେବତା ରେ ॥
ଠକି ଯିବୁଟି ଠିକମୁଣ୍ଡ ପଡ଼ିଲେ ।
ଠିକେଂ ଗୁରୁଙ୍କ ସେବା କରତୁ ଭଲେ ରେ ॥ ୧୨ ।

ଡାକି କହୁଛି ମନ ଭଜ ଗୋବିନ୍ଦ ।
ଡର ଜଞ୍ଜାଳ ଯାଉ ତୋହର ହୃଦରେ ॥
ଡଙ୍ଗା ଯେହ୍ନେ ଜଳରେ ଚାହାଁ ପଛକୁ ।
ଡେରିଥା'ନ୍ତି ଶ୍ରବଣ ଭକ୍ତ-ଡାକକୁ ରେ ॥ ୧୩ ।

ଢୋଲ ଯେସନେ ଢାଉଁ ଢାଉଁ ବାଜଇ ।
ଢାଳେ ତହିଁ ଭିତରେ କିଛି ହିଁ ନାହିଁରେ ॥
ଢାଙ୍କି ରହିଛି ଦେହ ସବୁଟି ତୁଚ୍ଛ ।
ଢଳି ପଡ଼ିଲେ ସବୁ ହେବଟି ମିଛ ରେ ॥ ୧୪ ।

ଏଣେ ତୁ ଦେଇଥିଲେ ତେଣେ ପାଇବୁ ।
ଅଣ-ଆୟତ୍ତ ବେଳେ କି ଘେନି ଯିବୁ ରେ ॥
ଅଣନିଶ୍ୱାସୀ ହୋଇ ରହିବୁ ଦିନେ ।
ଅନେକ ଦୁଃଖ ଦେବେ ଯମ ଭୁବନେ ରେ ॥୧୫ ।

ତୁ ଯେବେ ବୋଲୁ ମୋର ଅର୍ଜିଲା ଧନ ।
ତୋ ଦେହ ନୋହେ ତାର ଦେଖ ଏମାନ ରେ ॥
ତୋହରି ସଙ୍ଗୁ ମନ ଗଲେଣି କେତେ ।
ତୁ ମିଥ୍ୟା କଥାକୁ ତ ଯାଉ ପରତେ ॥ ୧୬ ।

ଥିଲେ ଏ ସଂସାରରେ ଯେତେ ନୃପତି ।
ଥୟ କରି କେ ଭୋଗ କଲା ଏ ପୃଥୀ ରେ ॥
ଥୋଇଲା ଧନ ତୋର ଖଣ୍ଡ ଖାଇବେ ।
ଥାନ ତୋହର ଘର କରି ରହିବେ ରେ ॥ ୧୭ ।

ଦେହେ ପୁରିଛି ତୋର ଅଶେଷ ରୋଗ ।
ଦିନା ଚାରିକି ସିନା ଏ ସୁଖ ଭୋଗ ରେ ॥
ଦଣ୍ଡେହେଁ କେହି ତୋତେ ରଖିବେ ନାହିଁ ।
ଦଣ୍ଡୁ ଯେ ଥିବେ ଯମ-ଡଗରେ ନେଇ ରେ ॥ ୧୮ ।

ଧର୍ମ ଅଧର୍ମ କଥା ନ ଜାଣୁ ତୁହି ।
ଧନ୍ଦିହେଉଛୁ ଧନ ଅର୍ଜିବା ପାଇଁ ରେ ॥
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ ।
ଧର୍ମରେ ଆତଯାତ ହେଉଛି ମହୀ ରେ ॥ ୧୯ ।

ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ ।
ନରକେ ପଡ଼ି କେତେ ଦୁଃଖ ସହିବୁ ରେ ॥
ନିମିଷେ ମାତ୍ର ମୁଖେ ନ ବୋଲୁ ହରି ।
ନାଶ ହେତୁକୁ କିପାଁ ଅଛୁ ଆବୋରି ରେ ॥ ୨୦ ।

ପାହିଲେ ନିଶି ଯେହ୍ନେ ରବି ଉଦଏ ।
ପଦ୍ମ ଲୋଚନ ସବୁ ଦେହେ ଉଦଏ ରେ ॥
ପ୍ରଭୁଙ୍କୁ ଆଶ୍ରେ କର ତରିବୁ ଯେବେ ।
ପାଦପଦ୍ମରେ ଚିତ୍ତ ଦିଅ ତୁ ଏବେ ରେ ॥ ୨୧ ।

ଫୁଲୁ ଗନ୍ଧ ହରିଲା ପ୍ରାୟେ ସମୀର ।
ଫିଟି ପଳାଇ ଯିବ ଜୀବ ତୋହର ରେ ॥
ଫଳ ସଂସାରେ ଲାଭ ହରି ଭଜନ ।
ଫାଶ ଗଳାକୁ କିମ୍ପା କରିଛୁ ଧନ ରେ ॥ ୨୨ ।

ବେଳକୁ ବେଳ ତୋତେ କହିଛି ମୁହିଁ ।
ବାନ୍ଧିଣ ନେବ ଯମ କି ଦୁଃଖ ଦେଇ ରେ ॥
ବିକଳେ କାନ୍ଦୁଥିବୁ ଆକୁଳ ହୋଇ ।
ବେଳହୁଁ ଆଶ୍ରେକରି ଭଜ ଗୋସାଇଁ ରେ ॥ ୨୩ ।

ଭେଳା ବୁଡ଼ିବ ହେଲା କଲେ କହୁଛି ।
ଭଙ୍ଗା ନାବରେ କେବା ସିନ୍ଧୁ ତରିଛି ରେ ॥
ଭାବକୁ ନିକଟ ସେ ଅଭାବେ ଦୂର ।
ଭକତ ଦାସ କହେ ଜୀବନ ଛାର ରେ ॥ ୨୪ ।

ମିଛ ମାୟା ସଂସାର ନୋହେ କାହାରି ।
ମଲା ବୋଲିଣ ଦିନେ ପଡ଼ିବ ହୁରି ରେ ॥
ମହିଭିତରେ କେହି ରହିବେ ନାହି ।
ମଲା ବୋଲି କାନ୍ଦୁଛୁ,ମରିବୁ ତୁହିରେ ॥ ୨୫ ।

ଜନମ ହେଲେ ପ୍ରାଣୀ ଅବଶ୍ୟ ମରି ।
ଯଶ ରଖିବୁ ଯେବେ ଭଜ ଶ୍ରୀହରି ରେ ॥
ଯମ ଯେ ନେବୁ ବାନ୍ଧି ହେବୁ ମେଲାଣି ।
ଜଗନ୍ନାଥ ମହିଁମା ଏଣିକି ଆଣି ରେ ॥ ୨୬ ।
ରଙ୍ଗ ପସରା ସିନା ଭବ ସାଗର ।
ରଙ୍ଗ ଭିତରେ ଅଛି କି ନାରଖାର ରେ ॥
ରୂପ-ପ୍ରତିମାକୁ ତୁ ପରତେ ନ ଯା' ।
ରହିବେ ନାହିଁ କେହି ରଜା ପରଜା ରେ ॥ ୨୭ ।

ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ ନିତି ।
ଲୋଭ କରି ଅର୍ଜ୍ଜିଲୁ ଧନ ସଂପତ୍ତି ରେ ॥
ଲୋଭ ଟି ସବୁ ନାଶ କରଇ ମନ ।
ଲୋଡ଼ିଲେ ନ ପାଇବୁ ଆଉ ଜୀବନ ରେ ॥ ୨୮ ।

ବିଅର୍ଥେ ବହିଅଛୁ ଦୁର୍ଲ୍ଲଭ ଦେହ ।
ବିଷୟା-ବିଷେ ଆଉ ନ ବଳା ସ୍ନେହ ରେ ॥
ବୁଡ଼ି ଯିବଟି ମୂଳ ଲାଭ ସରିବ ।
ବେଳହୁଁ ଆଶ୍ରେ କରି ଭଜ ମାଧବ ରେ ॥ ୨୯ ।

ଶ୍ରୀକୃଷ୍ଣପାଦପଦ୍ମେ ଦିଅ ତୁ ମନ ।
ସରିଲେ ନ ପାଇବୁ ଆଉ ଜୀବନ ରେ ॥
ଶ୍ରୀକୃଷ୍ଣ ନାମ ଗୋଟି କର ଭଜନ ।
ଶ୍ରୀକୃଷ୍ଣପାଦପଦ୍ମେ ଦିଅତୁ ଧ୍ୟାନ ରେ ॥ ୩୦ ।

ସନ୍ତୋଷଚିତ୍ତେ ତୁହି ହରିଙ୍କି ଭଜ ।
ସଂସାରେ ପଡ଼ି ଆଉ ନ ପାଅ ଲାଜ ରେ ॥
ସବୁଟି ମିଛ ହରି ନାମ ଟି ସତ ।
ଶ୍ରୀକୃଷ୍ଣପାଦପଦ୍ମେ ଦିଅ ତୁ ଚିତ୍ତ ରେ ॥ ୩୧ ।

ସତ୍ୟ ମଣୁଛୁ ତୁହି ଭବସାଗର ।
ସରିଯାଉଛି ପରମାୟୁ ତୋହର ରେ ॥
ସନ୍ତୋଷ ହୋଇ ଦୃଢ଼େ ଭଜ ଶ୍ରୀହରି ।
ଶୋକ ସାଗର ଯେବେ ହୋଇବୁ ପାରି ରେ ॥ ୩୨ ।

ହୁଡ଼ିଲେ ଯେତେ ଜନ ହରିନାମକୁ ।
ହୀନ ଗତିକୁ ଗଲେ ବୁଡ଼ି ତଳକୁ ରେ ॥
ଠକିଲେ ଦେହ ଆଉ ପାଇବୁ ନାହିଁ ।
ହାଟ ବସାଇଥିବେ ତୋ ଦେହ ପାଇଁ ରେ ॥ ୩୩ ।

କ୍ଷୟ, ଦୁର୍ଲ୍ଲଭ ଦେହ, ହୋଏ ଆୟୁଷ ।
କ୍ଷୟ ନ ଯିବ ନାମ ହୃଦରେ ଘୋଷ ରେ ॥
ଛାର ଦେହକୁ ମନ ନ ଯା ବିଶ୍ୱାସ ।
ଛାଡ଼ ଦୁର୍ବୁଦ୍ଧି କହେ ଭକତ ଦାସ ରେ ॥ ୩୪ ।



# ଚିତ୍ତ ଚିନ୍ତ ଜଗନ୍ନାଥ କଳା ମୁଖକୁ

ବ୍ରଜନାଥ ବଡ଼ଜେନା

ଚିତ୍ତ ଚିନ୍ତ ଜଗନ୍ନାଥ କଳାମୁଖକୁ ।
ପାଇବୁ ପରମାନନ୍ଦ ସୁଖକୁ ରେ ।। ଘୋଷା ।।

ଅରୁଣ ରଙ୍ଗ ଅଧର        ଆହା କେଡ଼େ ମନୋହର
ହସୁଥିଲା ପ୍ରାୟ ଦିଶେ ପାଖକୁ ରେ ।। ୧ ।।

ପ୍ରବଳ ବିପୁଳ ବାହା        ଟେକିବା ଭଙ୍ଗୀକି ଚାହାଁ
ଯାହା ତଳେ ରଖନ୍ତି ଅରକ୍ଷକୁ ରେ ।। ୨ ।।

ସୁନିଶ୍ଚଳ ଚକାଆଖି        ଚାହିଁଲେ କରି ନିରେଖି
ନ ଯିବୁ ଯମଦଣ୍ଡ ପାଖକୁ ରେ ।। ୩ ।।

କରୁଣାରେ ପରିପୂର୍ଣ୍ଣ        ଡାଳେ ପଙ୍କଜ ନୟନ
ତାରୁଛନ୍ତି ପାପୀ ଲକ୍ଷ ଲକ୍ଷକୁ ରେ ।। ୪ ।।

ଅଟନ୍ତି  କି ଭାବଗ୍ରାହୀ        ଶ୍ରୀବତ୍ସ ପାଦକୁ ବହି
ଅଛନ୍ତି, ଅନାଉ କିନା ବକ୍ଷକୁ ରେ ।। ୫ ।।

କର୍ଣ୍ଣେ ମକର କୁଣ୍ଡଳ        ଝଲକେ ଗଣ୍ଡ ମଣ୍ଡଳ
ନାହିଁ ତ ଉପମା ଦେବା ଲକ୍ଷକୁ ରେ ।। ୬ ।।

କପୋଳେ ରତନ ଚିତା        ଦେଖି ଧରି ନୋହେ ଚେତା
ତଥିପରେ ହେମ ରାହୁ ରେଖ କୁ ରେ ।।୭ ।।

ବ୍ରଜନାଥ ବୋଲେ କାଳ        ଦେବତା ନ ଧରୁ ବାଳ
କରିଥା  କରୁଣାସିନ୍ଧୁ ପକ୍ଷକୁ ରେ  ।।୮ ।।



# ଦୀନଜନ ବଂଧୁ ଆରତତ୍ରାଣ

ବ୍ରଜନାଥ ବଡ଼ଜେନା

ଦୀନଜନ ବନ୍ଧୁ ଆରତ ତ୍ରାଣ   ଦଶ ଚାରି ଭୁବନର ଶରଣ
ଦିନକୁ ଦିନ ଦୁଃଖ ହେଲା ଭାରି   ଦୀନଜନମାନେ ଛାଡ଼ିଲେ ହୁରି
ଦୟାଏଣୁ ତେଜି
ଦାରୁଣ ହେଲ କି ଶ୍ରବଣ ବୁଜି ॥ ୧ ॥

ଦେଇ ଦେଇ ହେଲା ଭଣ୍ଡାର ଶୂନ୍ୟ   ଦୁଆର ନ ଛାଡ଼ିଲେ ଦୀନଜନ
ଦଇବେତ ଦୁଃଖୀ ହେଲେ ପ୍ରବଳ   ଦେବାକୁ ଯେଣୁ ନ ପାଇଲା ବଳ
ଦୟା ଏଣୁ ତେଜି
ଦାରୁଣ ହେଲକି ଶ୍ରବଣ ବୁଜି ॥୨ ॥

ଦ୍ରୋହ କଲବା କମଳା ନାରୀଙ୍କି   ଦେଲେ ସେ ଭଣ୍ଡାର ଦ୍ୱାର ପାରିକି
ଦିନେ ତୁମ୍ଭଙ୍କୁ ନ ମିଳିଲାବେଳେ,   ଦେବ କାହୁଁ ବା ମାଗିଲେ କବଳେ
ଦୟା ଏଣୁ ତେଜି
ଦାରୁଣ ହେଲକି ଶ୍ରବଣ ବୁଜି ॥୩ ॥

ଦୂରେ ଥାଇ ଗଜ ଡାକ ଶୁଣିଲ   ଦୁଷ୍ଟ କୁମ୍ଭୀରକୁ ଚକ୍ରେ ହାଣିଲ
ଦ୍ରୌପଦୀ ଆରତ ଫେଡ଼ିଲ ଯେଣୁ   ଦୁଃସହ ଭାରା ହେଲା ଅବା ତେଣୁ
ଦୟା ଏଣୁ ତେଜି
ଦାରୁଣ ହେଲକି ଶ୍ରବଣ ବୁଜି ॥୪ ॥

ଦ୍ୱିସପ୍ତ ଲୋକରେ ମୋ ପାରି ଯେଣୁ   ଦୁଃଖୀ ନ ଦେଖି ଭୟ କଲ ତେଣୁ
ଦଇବେ ଦୀନରେ ଅଗ୍ରଣୀ ମୁଁ ତ   ଦିବା ରାତ୍ରରେ ଭାଳେ ବ୍ରଜନାଥ
ଦୟା ଏଣୁ ତେଜି
ଦାରୁଣ ହେଲକି ଶ୍ରବଣ ବୁଜି ॥୫ ॥



# ଆହେ ଜଗନ୍ନାଥ ଦୁଃଖୀର ସଂଗାତ (ସଂଘାତ)

## ବ୍ରଜନାଥ ବଡ଼ଜେନା

ଆହେ ଜଗନ୍ନାଥ          ଦୁଃଖୀର ସଂଗାତ (ସଂଘାତ)
ନ ରଖିଲେ ଭାସି ଯାଉଛି ।
ମତ୍ତ ଗରବରେ          ପ୍ରଭୁଙ୍କୁ ନ ଚିହ୍ନି
ତହିଁ ପ୍ରତିଫଳ ପାଇଛି ॥୧ ॥

ପୀନ ବାହୁଯୁଗ          ଟେକି ରଖିଅଛ
ଦୀନକୁ ରଖିବା ପାଇଁ
ଜଗନ୍ନାଥ ତୁମ          ଜଗତ ଭିତରେ
ମୋତେ କି ଗଣିଲ ନାହିଁ ॥ ୨ ॥

କାଳକ ଯାକ ତ          ବାଳକ ବୁଦ୍ଧି ମୋ
ନ ଗଲା କେହି ତରିଛି
କାଳ ନାଶନ ନା-          ମକୁ ଆଶ୍ରେ କରି
ଅକାରଣରେ ମରୁଛି ॥ ୩ ॥

ନାହିଁ ତାତ ମାତ          ସ୍ୱାମୀ ଇଷ୍ଟ ମିତ୍ର
ଭାଇ ବନ୍ଧୁ ଥାଇ ନାହିଁ
ଏପରି ଦରିଦ୍ର          ହେଲେ ହେଁ ସୁରେନ୍ଦ୍ର !
ଆହା ବୋଲନ୍ତା ହିଁ ନାହିଁ ॥ ୪ ॥

ପତିତପାବନ          ବାନା ଉଡ଼ାଉଛ
ମୋ ଠାରେ ନ ଦିଅ ଦୃଷ୍ଟି
ପର ଅପର ବି-          ଚାର ତୁମ୍ଭେ କଲେ
କିପରି ରହିବ ସୃଷ୍ଟି ॥୫ ॥

ଦୀନ ଜନଙ୍କର          ବନ୍ଧୁ ହୋଇ ଦୀନ-
ବନ୍ଧୁଙ୍କ ନାମ ବହିଲ
ମୋହଠାରୁ ଦୀନ          ଶ୍ରେଷ୍ଠ କେହୁ ଅଛି
କାହାକୁ ଆଉ ରଖିଲ ॥ ୬ ॥

ନାହିଁ ଯା ବିନା ଆ- ନ ଗତି ସେ ତାକୁ
ସବୁ ତ ଗୋଚର କଲେ
ନଗ ଯେହ୍ନେ ଫଳି ଫୁଟି ଶୀର୍ଣ୍ଣ ହୋଏ
କେବଳ ଧରା ଉପରେ ॥୭ ॥

କି ରୂପ ତୁମ୍ଭର ଭଗତ ହୋଇଛୁ
କି ରୂପେ କରୁଛ ଦୟା
ଏହା ନ ଜାଣିଲି ମୂଖେତ ହୋଇଲି
କେବଳ ଧରିଣ କାୟା ॥୮ ॥

ଘରେ ବସିଥାଇ ମୁଖେ ଦେଲେ ଖାଇ
ଚତୁର୍ମାସ୍ୟା ବକ ପରି
ଅଜଗର ଚିନ୍ତୁ ଅଜାଣେ ଧାତା ବା
ଗଢ଼ିଲା ମନୁଷ୍ୟ କରି ॥ ୯ ॥

ପୂରି ରହି ଅଛି କରୁଣା ସମୁଦ୍ର
ସରିଯିବ ତହୁଁ କେତେ
କୁଶାଗ୍ର ବିନ୍ଦୁରେ ସୁଖୀ ହୋଇବି ମୁଁ
କୋଟି ଜନ୍ମ ପରିଯନ୍ତେ ॥୧୦ ॥

ଶିଷ୍ଟ କରଣ କୁ- ଳରେ ଜାତ ହୋଇ
ଇଷ୍ଟ ଭଜି ନ ପାରିଲି
ଅରକ୍ଷ ରକ୍ଷଣ ଜଗତ କାରଣ
ଚରଣେ ଶରଣ ଗଲି ॥୧୧ ॥

ରଖ ବା ନ ରଖ ମୋର ନାହିଁ ସଖ୍ୟ
ବିଧିମତେ ସେବିବାର
ବାର ବାର କରି ଜଣାଉଛି ଦୀନ
ବରଜନାଥ କିଙ୍କର ॥ ୧୨ ॥



# ଅନ୍ତର୍ଯାମୀ ! ଅନ୍ତର୍ଗତ ବାରତା ଜାଣ

ଅଭିମନ୍ୟୁ ସାମନ୍ତସିଂହାର

ଜୟଜୟ ଜଗନ୍ନାଥ　　ଚଢ଼ି ନନ୍ଦିଘୋଷ ରଥ
ଅନ୍ତର୍ଯାମୀ ! ଅନ୍ତର୍ଗତ ବାରତା ଜାଣ
ଦୁଃଖୀ ଜଣାଇଲେ ଦୁଃଖ　　କେବେହେଁ ନୁହଁ ବିମୁଖ
ଦୁଃଖ ଏଡ଼ି ସୁଖ ତାକୁ ଦିଅ ଆପଣ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୧।

ପୂର୍ବେ ନରସିଂହ ରୂପେ　　ସ୍ତମ୍ଭରୁ ବାହାରି ଆପେ
ହିରଣ୍ୟ ରାଜାର ହୃଦ ନଖେ ଚିରିଲ
ତା' ପୁତ୍ର ପ୍ରହଲ୍ଲାଦକୁ　　ସ୍ୱର୍ଗେ ଇନ୍ଦ୍ର କଲ ତାକୁ
ଧ୍ରୁବ କୁମାରକୁ ଅଭିମାନୁଁ ତାରିଲ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୨।

ଦୁର୍ଯ୍ୟୋଧନ ସଭାତଳେ　　ଦ୍ରୌପଦୀଙ୍କି ନେଲାବେଳେ
ସତୀ ବିବସନ କାଳେ ଚିନ୍ତିଲେ ଯହୁଁ
ଆତଙ୍ଗ ନାଶନ ବାନା　　ବିପଦକୁ ବନ୍ଧୁ ସେହ୍ନା
ପଞ୍ଚାବନ କୋଟି ବସ୍ତ୍ର ଦେଲଟି କାହୁଁ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୩।

ବନ ଜୀବ ପଶୁଜାତି　　ତା ସଙ୍ଗେ ବାଳ ସନ୍ତତି
ଆପେ ଗର୍ଭବାସ ହୋଇ ବୁଲେ ବନରେ
ଶବର ବିନ୍ଧିଲା ବାଣ　　ମୃଗୀ ଚିନ୍ତେ ନାରାୟଣ
ବଜ୍ରମାରି ବ୍ୟାଧ ପ୍ରାଣ ନେଲଟି ଖରେ

ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୪।

ଗଜରାଜ ଜଳ ପିଉଁ ଗ୍ରାହ ପୀଡ଼ାକଲା ଯହୁଁ
ଆତଙ୍କେ ଡାକିଲା ଗଜ ରଖିଲ ହେଳେ
ଆତଙ୍କ ନାଶନ ବାନା ବିପଦକୁ ବଜ୍ର ସେହ୍ନା
ଅଦଭୁତେ ଗ୍ରାହଣିର ଛେଦିଲ ଜଳେ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୫ ।

ବାଳି ଦଶାନନମାରି ସୁଗ୍ରୀ ବିଭିଷଣ ତାରି
ଅକଣ୍ଟକ ରାଜ୍ୟ ଦେଲ ସୁବର୍ଣ୍ଣପୁରୀ
ଉଗ୍ରସେନେ ଶାଢ଼ି ଦେଇ ଯୁଧିଷ୍ଠିଙ୍କି ହେଲ ସ୍ନେହୀ
ଦୁର୍ଯ୍ୟୋଧନ ଶତଭ୍ରାତା କୁଟେଣ ମାରି
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୬।

ଦାମୋଦର ପଣ୍ଡା ଦୁଃଖ ଆଚମ୍ଭିତ କଥା ଦେଖ
ଭିକ୍ଷାକୁ ମାଗିଣ ସେହୁ ବଞ୍ଚଇ ଦିନ
ସେ ଗଲା ଦ୍ୱାରକା ପୁର ସେବିଲା ତୁମ୍ଭ ପୟର
ବିପୁଳ ସମ୍ପତ୍ତି ଦେଲ ହେ ଭଗବାନ ।
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୭ ।

ଦୀନ ଅଭିମନ୍ୟୁ ମାନ କହିଲେ କିପାଁ ନ ଶୁଣ
ଆହେ ପ୍ରଭୁ ଶଙ୍ଖ ଚକ୍ର ସାରଙ୍ଗ ଧର ।
ଲକ୍ଷେ ଯୋଜନରେ ଥାଇ ଡାକିଲେ ଶୁଣ ଗୋସାଇଁ
ତେଣୁକରି ଭରସାଟି ଅଛି ମୋହର ।
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୮।



# ସୁଖତ ନୋହିଲା ଦିନେ

## ଅଭିମନ୍ୟୁ ସାମନ୍ତ ସିଂହାର

ଦୁଃଖତ ନଗଲା ଦିନେ ଦୀନବନ୍ଧୁ
ସୁଖତ ନୋହିଲା ଦିନେ
ଅନବରତ ମୁଁ ସନ୍ତାପେ ମରିଲି
ବନ କ୍ରୋଟ ଅଗ୍ନି ଯେହ୍ନେ ॥ପଦ ॥

ଆହେ ଶତପତ୍ର-ନେତ୍ର କରୁ ଚକ୍ର
ହରାଇଛ ଅବା କେଣେ,
କିବା ମୋ କର୍ମକୁ ଦାଢ଼ ଶୂନ୍ୟ ହେଲା
ତେଣୁ ନ ଶୁଣ ଶ୍ରବଣେ ॥ ୧ ॥

କରିଥିଲି ଆଶ ହୋଇବ ଉଶ୍ୱାସ
ମୋର ଏ   କିଲ୍ଲିଷ ଦିନେ
କରୁଣାସାଗର ବିନ୍ଦୁମାତ୍ର ଦାନେ
ଶୁଖିଗଲ କି କାରଣେ ॥ ୨ ॥

ପତିତ ଜନକୁ ଉଦ୍ଧାରିଛ ବୋଲି
ବାନା ଉଡ଼େ ତ୍ରିଭୁବନେ,
ମୁଁ ଜଣେ ପତିତ ନୁହେଁ କି ହେ ନାଥ
ତୁମ୍ଭ ସର୍ଜିଲା ଭୁବନେ ॥ ୩ ॥

ରଖ ବା ନ ରଖ ଆହେ ସରୋଜାକ୍ଷ
ଅରକ୍ଷକ ମୁହିଁ ଜଣେ,
ଭଣେ ଅଭିମନ୍ୟୁ ସାମନ୍ତସିଂହାର
ଶରଣ ରଙ୍ଗା ଚରଣେ ॥ ୪ ॥



# ଦୟାମୟ ଦୟାସିନ୍ଧୁ ପଦେ

## ଅଭିମନ୍ୟୁ ସାମନ୍ତ ସିଂହାର

ଦୟାମୟ ଦୟାସିନ୍ଧୁ ପଦେ ମୁଁ
ଲଗାଇଲି ମନ ଲୟ ହେ । ପଦ ।

ରଖିଥିଲି ଆଶା ଗୋପନ ବନ୍ଧୁତା
ଜାଣେ କନ୍ଦାଇଛ କେତେ ସିନ୍ଧୁ ସୁତା
କାଳକୁ ରହିଛି ଶ୍ରୀଗଣ୍ଡିଚା କଥା,
ଭଳି ମନ ନୁହେଁ ଥୟ ହେ ।୧ ।

କରିବାକୁ ପ୍ରେମ ପୋଷିଥିଲି ମନେ
ଚନ୍ଦ୍ରବଳୀ ଦଶା ପଡ଼ିଥିଲା ଧ୍ୟାନେ
ଭାଳେ ନିରନ୍ତର ମନ କଥା ମନେ,
କେମନ୍ତେ ହେବି ନିଭୟ ହେ ।୨ ।

କପଟ ରଖି ଯେ ତୁମକୁ ଜିତିବା
କେଉଁ ଭରସାରେ ପାଞ୍ଚିଛି ମୁଁ ଅବା
ମନେ ପଡ଼େ ଅଭିମନ୍ୟୁ ଜୀବ ଯିବା,
କେମନ୍ତେ କରିବି ଜୟ ହେ । ୩ ।

ଘାରିବାରୁ ନିତି ଘୋର ଦୁଃଖ ଶୋକ
ହରିବାରୁ ହୋଇ ନିରାଶ ଅଧିକ
ବାରି ପାରିଛି ମୁଁ ଅନାଇ ଶ୍ରୀମୁଖ
ଯାହାତୁମ ଅଭିପ୍ରାୟ ହେ ।୪ ।



# ଘେନ ଘେନ ମୋର ଜଣାଣ

## ଅଭିମନ୍ୟୁ ସାମନ୍ତ ସିଂହାର

ଘେନ ଘେନ ମୋର ଜଣାଣ
ବାରେ କୃପାନିଦାନ
ବକାରି କଂସାରି ନୀଳାଦ୍ରି ବିହାରୀ
ଗୋବର୍ଦ୍ଧନ ଗିରି ଧାରଣ ॥ ପଦ ॥

ସତ୍ୟଯୁଗେ ସତ୍ୟବନ୍ତ ହୋଇ
ହରି ଇନ୍ଦ୍ର ଛଳେ କରି ଗମନ
ମାୟାବଟୁ ବେଶ ଧରି ଶ୍ରୀନିବାସ
ବଳିକି କରିଛ କାରଣ ॥୧ ॥

ତ୍ରେତୟା ଯୁଗରେ ମିହିର ବଂଶରେ
କୌଶଲ୍ୟା କୋଳେ ଜନମ
ପିତା ସତ୍ୟମାନୀ ହେଲ ବନବାସୀ
ନାଶିଲ ନିକଷା ନନ୍ଦନ ॥୨॥

ଦ୍ୱାପର ଯୁଗରେ ମଥୁରା ନଗରେ
ଜନ୍ମ ହେଲ ବଳି ସଦନ
ଆସି ଗୋପପୁରୀ ମୋହି ବ୍ରଜନାରୀ
କଂସକୁ ଧ୍ୱଂସିଲ ଆପଣ ॥୩॥

କଳିଯୁଗରେ ଶ୍ରୀ ନୀଳାଚଳରେ
ଜଗନ୍ନାଥ ନାମ ଧାରଣ
କରିଲୀଳା ଖେଳା ଆହେ ଚକାଡୋଳ
ଭକ୍ତଙ୍କୁ କରିଛ ତାରଣ ॥୪॥

ଏହି ରୂପେ କେତେପରି ଅନୁସାରେ
ଲୀଳା କରିଅଛ ଧାରଣ
ବୋଲେ ଅଭିମନ୍ୟୁ ସାମନ୍ତସିଂହାର
ଶ୍ରୀରଙ୍ଗା ଚରଣେ ଶରଣ ॥୫ ॥



# କ୍ଷୀରମୟ ସିନ୍ଧୁ

## ବଳଦେବ ରଥ

କ୍ଷୀରମୟ-ସିନ୍ଧୁ-ଜେମା-ଜୀବ ବନ୍ଧୁ ତୁମ୍ଭେ ତ ଜଗତପତି ।
ଟେକି ସମଦୃଷ୍ଟି ପତାକାକୁ ପୁଣି ଏ କି ପକ୍ଷପାତ-ରୀତି
ହେ ମହାପ୍ରଭୁ !
କେ କି କଲା ମୁଁ ନ କଲି
କେ କି ଦେଲା ଅବା ମୁଁ ଅବା ନ ଦେବା
ଘେନି ଏତେ ସରି ହେଲି ହେ ।୧।

ମୃଗ ଯୁବତୀ କି ରଖିଲ ଯେ ନାଶି ମୃଗୟୁ ବିଦ୍ୱେଷ-ଦାଉ
ଚରଣ ପଙ୍କଜ ସ୍ମରଣ ବିନା ସେ କିସ କରିଥିଲା ଆଉ ?
ହେ ମହା ପ୍ରଭୁ
କୁମ୍ଭୀର ଗ୍ରାସନ୍ତେ ଗାତ୍ର
ଜନେ କହିବାର ଅନେକପ ରଜା
ମନେକଲା ସିନା ମାତ୍ର ହେ ॥୨।

ନୃପ ସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ ସୁତା ଆବର
ଧ୍ୟାନରୁ ଆନ କିଛି ଶୁଣିବାର କାନ ଶୁଣିନାହିଁ ମୋର
ହେ ମହାପ୍ରଭୁ !
ହିତେ ଯେ ଥାଅ ନିରତେ
ଲାଞ୍ଚ ଦେଇଥିଲେ କାଞ୍ଚନ କେତେକି
ପାଞ୍ଚ ପଣ୍ଡୁରାଜ ସୁତେ ହେ ॥ ୩ ॥

ରୂପରେ କେଳତି ଉପରେ ପତାକା ଦିଆଇଲ ଯେ କୁଜୀକି ।
ଯାହା ହୋଇଥିଲା ଯାହା ହେଲା ତୁମ ପ୍ରସାଦ ବର୍ଶୁଁ ରଜକୀ,
ହେ ମହାପ୍ରଭୁ !

ଜଗତେ ତ ତାହା ଜଣା
ଅନ୍ଧକୁ ନେତ୍ର ମିଳିବାରୁ ହୋଇଛି
ଯଶ ଡିଣ୍ଡିମ ବାଜଣା ହେ ॥ ୪ ॥

ନଳ କୁବେରଙ୍କ ଚରିତ ଯେ ବୁଧ ବଳକୁ ଅଛନ୍ତି ଏବେ
ପ୍ରହ୍ଲାଦକୁ ମହା ଆହ୍ଲାଦ ଆପଣ କରିଛ ପରା ପୂରୁବେ
ହେ ମହାପ୍ରଭୁ !
ମୁନିଙ୍କ ଆଶ୍ରମ ଶୀଳାଂ
ତୁମ୍ଭଙ୍କୁ କି ଉପକାର କରି
ରୂପବତୀ ହୋଇ ବିଳସିଲା ହେ ॥ ୫ ॥

କେବଳ ସୁଦାମା ଦ୍ୱିଜ ନିଜ ଶକ୍ତି ଅନୁରୂପ ଆଚରିଲେ
ଗଳିତାଏ ଖୁଦ ନଜର ଦେବାରୁ ଫଳ ତାଦୃଶ ଲଭିଲେ
ହେ ମହାପ୍ରଭୁ !
ଆଉ କେ କି କଲା କହ
ଆଉ କାହା କୁମ୍ଭ ପୁରିନାହିଁ ତୁମ୍ଭ
ଅହେତୁକ ଅନୁଗ୍ରହ ହେ ॥ ୬ ॥

ଅନନୁଗତ ତୋ ମନ ନୁହେଁ ବୋଲି ଆଜ୍ଞା ହେବ ପରା ମୋତେ
ନାମ ସ୍ୱସୁତର ଡାକିବାରୁ ଦିବ୍ୟ ଧାମ ଲଭିଲା କେମନ୍ତେ
ହେ ମହାପ୍ରଭୁ !
ଅଜାମିଳ ମହୀସୁର
କେଉଁ ସାବଧାନ ହୋଇ ନାମ ଗାନ
କରିଥିଲା ସେ ତୁମ୍ଭର ହେ ॥ ୭ ॥

କବି ରବି ରାୟଗୁରୁ ଯୋଡ଼ି କରଯୁଗକୁ ଛାମୁରେ କହେ
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେଁ
ହେ ମହାପ୍ରଭୁ !
ସବୁ ତୁମ୍ଭ ଇଚ୍ଛା ସିନା
ରଖ ବା ନ ରଖ ମୋହର ଗତି ତ
ପତିତପାବନ ବାନା ହେ ॥ ୮ ॥



# ବାଧିଲା ଜାଣି କ୍ଷମା କର ନୋହିଲେ

## ବଳଦେବ ରଥ

ବାଧିଲା ଜାଣି କ୍ଷମା କର ନୋହିଲେ ରମା
ରମଣ ଦଣ୍ଡେ ଦିଅ ଟାଳ
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ଭରତି କରି ଦେବି ଗାଳି ହେ କୃପାନିଧି !
କରୁଣା ସିନ୍ଧୁ ବୋଲି କରି,
କହନ୍ତି ବୁଧେ ଡରି ମରି
କାଳ ସର୍ପ ଆପଣ କବଳ କର ପ୍ରାଣ-
ପବନ ମାନଙ୍କୁ ଧବୁରି ହେ ॥ ୧ ॥

ଜଳଧି ଅନ୍ତେ ନିଜ ଘର ଦେବାଧି ରାଜ
ବୁଡ଼ାଇ ଦେଇଛ ଆପଣ,
ତୁମ୍ଭରି ସିନା ଘେନ ଆଶ୍ଚର୍ଯ୍ୟ ନୁହେଁ ଆନ
ଜନର ଘରବୁଡ଼ା ପଣ ହେ କୃପାନିଧି !
ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ,
ବତାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବତାଇବାକୁ ଛିଡ଼ା,
ହୋଇଛି ବତାଇବି ଭଲେ ହେ ॥ ୨॥

ତାହାକୁ ବୋଲି ଚକ୍ରୀ, ଚକ୍ର ଥିବାରୁ ଚକ୍ରୀ,
ତୁମ୍ଭେ ତ ବୋଲାଅ ମଣ୍ଡଳେ
ବେଢାରେ କୁଣ୍ଡଳୀ ସେ, ଆପଣ ତ ବିଶେଷେ,
ଭୂଷିତ ମକର କୁଣ୍ଡଳେ ହେ କୃପାନିଧି !
ଅଦୃଶ୍ୟ ହେବାରୁ ତା ପାଦ,

ତାହାକୁ ବୋଲି ଗୂଢ଼ପଦ
ଆପଣା ଚରଣତ ବିରଞ୍ଚିକୁ ଗୁପତ
କାହିଁ ତା ଠାରୁ ତୁମ୍ଭ ଭେଦ ହେ ॥ ୩ ॥

ହେବ ବା ଅବଧାନେ ତହାକୁ ତ୍ରିଭୁବନେ
ବୋଲନ୍ତି କାକୋଦର ନରେ
ଏ ତ୍ରିପିଷ୍ଟକ ଯାକ ମଧ୍ୟେ ଗୋଟିଏ କାକ,
ନାହିଁକି ତୁମ୍ଭରି ଉଦରେ ହେ
କୃପାନିଧି !
ବିବରେ ସେ ଅତି ଲମ୍ପଟ,
ବିବର ବିହଙ୍ଗମ ରାଟ
ବିଧିରେ ସେ ଲମ୍ପଟ,ଆପଣ ସେ ତ ପଟ
ପଟଳେ ହୋଇଅଛ ସ୍ଫୁଟ ହେ ॥ ୪ ॥

କାନ ନ ଥାଇ ଆଖି,ଭୁଜଙ୍ଗ ଠାରେ ଦେଖି
ନୟନ ଶ୍ରବା ବୋଲି ତାକୁ
କହ କମଳାନନ କାହିଁଛି ତୁମ କାନ
ସର୍ପ ବୋଇଲେ ଚଳିବାକୁ ହେ
କୃପାନିଧି !
ଫଣି କାୟାକୁ ବୋଲି ଭୋଗ
ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ,ତୁମ୍ଭେ କି ନୁହଁ ଭୋଗୀ
କରୁଯା ଅଛ ମହାଭୋଗ ହେ ॥ ୫ ॥

ଯେବେ ଭୁଜଙ୍ଗ ନୁହଁ,କାଳୀୟ ଠାରେ ଦ୍ରୋହ
କଲ କାହିଁକି ଏତେ କରି
କେତେ ନ ଥିଲେ ଗୋପେ,ତୁମ୍ଭେ କାହିଁକି କୋପେ
ତାହାକୁ ଦେଲ ପ୍ରାଣେ ମାରି ହେ
କୃପାନିଧି !
ତାଂହାରି ନାମ ତୁମ୍ଭ ନାମ
ଅଦ୍ୟାପି ହୋଇଛି ଜନମ
ଯେବେ ସ୍ୱଗୋତ୍ର ଦ୍ରୋହ ନ ଥାନ୍ତା ନାଥ କହ
କିମ୍ପାଇଁ ହୁଅନ୍ତା ଏ କ୍ରମ ହେ ॥ ୬ ॥

ଜାଣି ବାଳୁତ କାଳୁ,ଲବଣୀ ହାଣ୍ଡି ତଳୁ
ଧରି ପାଶରେ ଦୃଢ଼େ ଭିଡ଼ି
ଦୟା ନକରି ତିଳେ, ଯାମଳା ତରୁ ଡାଳେ,
ଜନନୀ ନେଇ ଦେଲେ ଛାଡ଼ି ହେ
କୃପା ନିଧି !
ଯେତେକ ଥିଲା ଗର୍ଭେ ପଡ଼ି,
ଜୀର୍ଣ୍ଣ ହେବାକୁ ଦେଲ ଭିଡ଼ି
ତିନି ଜଗତ ଯାକେ ଜାଣିତ ଥିବେ ଲୋକେ
ସେ ତରୁ ଯିବାର ଉପୁଡ଼ି ହେ ॥୭ ॥

ବ୍ରହ୍ମା-ଶଙ୍କର ମୁଖ୍ୟ ଦେବଙ୍କ ଠାରେ ମୋକ୍ଷ-
ପ୍ରଧାନ ଧନ ଗୁଢ଼ କଲ
ପତିତଙ୍କୁ ନ ପୋଷିବାର କ୍ରମରେ
ଅଶୀ-ବିଷ ପରାଏ ଅଭାସିଲ ହେ
କୃପାନିଧି !
ଅସାବଧାନେ ଗଲେ ମିଳି
ଗୋଟିକୁ ଗିଳଇ କୁଣ୍ଡଳୀ
ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡି ମଣ୍ଡଳୀ ଗୁଣ୍ଡ
କରି ଆପଣ ଅଛ ଗିଳି ହେ ॥ ୮ ॥

ଅହିତ ବୋଲାଏ ସେ, ଏକ ଅକ୍ଷର କୋଷେ,
ଅ-ହିତ ବୋଲାଅ ନିପୁଣ
କଂସ ପ୍ରମୁଖାସୁର ବିପକ୍ଷ ମାନଙ୍କର
ଅହିତ ହୋଇଛ ଆପଣ ହେ
କୃପାନିଧି !
ଜଗତେ ଧରି ଯେବେ ଅହ.
ଘଟ ଗୋଟିକେ ନେଇ ଥୋଇ
ଅଛି ଯାବତ ଘଟେ ବଞ୍ଚାଅ ଯେ କପଟେ,
ମୋହ ହାବୁଡୁ ଯିବ କାହିଁ ହେ ॥ ୯ ॥



# ଅନୁସରିତ

## ଗୋପାଳକୃଷ୍ଣ

ଅନୁସରିତ
ପଭୁ ! କାଳଯାକ ଗଲା ସରିତ
କଣ ବିତରଣ କଲେ କେତେ ଗୁଣ
ହୁଅନ୍ତା କରୁଣା ସରିତ ॥ ଘୋଷ ॥

ଅଶରଣ-ଜନ-ବନ୍ଧୁ ପଣ ଯଶ
ସଂସାରେ ହୋଇଛି ଉଦିତ,
ପଥର ହୋଇ ପଥରେ ପଡ଼ିଥିଲା
ଅହଲ୍ୟାକୁ ଦେଲ ତାରିତ ॥୧॥

ପାଞ୍ଚାଳିକି ଦୁଃଶାସନ ଘଞ୍ଚାଳିଲା
ବଞ୍ଚାଇଲ ବାସ ଦେଇ ତ,
ଘୁଞ୍ଚାଇଲ ନାହିଁ ମୋ ଛାର କଦନ
ପୋଛାଇଲ ନେତ୍ରୁ ବାରି ତ ॥୨ ॥

କାହିଁ ଥିଲା ଚକ୍ର କାହିଁ ଥିଲା ନକ୍ର
ପଲକ ପତନ ନୋହୁ ତ
ଛିଡ଼ିଗଲା ମଥା ରହିଗଲା କଥା
ଡାକିଲା ମାତ୍ରକେ କରୀ ତ ॥୩ ॥

କାଳକିଙ୍କର ଭୟରେ ଅଜାମିଳ
ପୁତ୍ରୋପଚାରରେ ଡାକି ତ
ପରମ ପଦ ପାଇଲା ଆପଣଙ୍କ
ନାମ ମହିମା ଏପରି ତ ॥୪ ॥

ନିରୁପାଧି କୃପାକର ବୋଲି ବିଧି
ଭବାଦିରେ ଥାଉ କଥିତ,
ମୁଁ କଲା ଦୋଷ କି ନାଶିଛ କି ବକୀ
ବିଷ ପିଆଉଁ ତା ଦୁରିତ ॥ ୫॥

ଗୋପାଳକୃଷ୍ଣ କହେ ଜଗନ୍ମଙ୍ଗଳ
ଯାହା କରିବ ତୁମ୍ଭ ଚିତ୍ତ,
ଆପଣା କୃପାଳୁ ପଣକୁ ବଳି ମୋ
ଦୁଷ୍କୃତ ନୁହଁଇ ଭାରି ତ ॥ ୬ ॥



# ଦୀନବଂଧୁ ହେ ! ହରି ଜଗନ୍ନିବାସ

## ଗୋପାଳକୃଷ୍ଣ

ଦୀନବନ୍ଧୁ ହେ ! ହରି ଜଗନ୍ନିବାସ ।
କାହିଁପାଇଁ ପ୍ରଭୋ !    ନିରାଶ କରୁଛ ?
ନୁହଁଇ କି ଭବେ ମୁଁ ତୁମ୍ଭ ଦାସ ॥ ଘୋଷା ॥

ନିଶ୍ଚିନ୍ତରେ ବସି    ନାମ ଭଜିବାକୁ
ପାଉନାହିଁ ଲବେ ମୁଁ ଅବକାଶ ।
ଦୁଃଖ ନିବାରଣ    ବାରଣ ତାରଣ
ସହାୟ ନୋହିଲେ ଗଲିଟି ନାଶ ॥୧॥

ଶ୍ରୀପତି ଶ୍ରୀରଙ୍ଗ    ଆହେ ଶ୍ୟାମଳାଙ୍ଗ
ନ ଶୁଣିବ ଯେବେ ମୋ ଦୈନ୍ୟ ଭାଷ ।
ତୁମ୍ଭ ବ୍ୟତିରେକେ    ଅଛି ବା ଆଉ କେ ?
ଜଣାଇବି ଦୁଃଖ ମୁଁ କାହା ପାଶ ॥୨ ॥

ମାଗୁନାହିଁ ଧନ-    ଜନ ବଡ଼ପଣ
ମାଗୁଛି କେବଳ ଶ୍ରୀ ବ୍ରଜେ ବାସ ।
ସାଧୁ ସଙ୍ଗେ ଥାଇ    ତବ ଗୁଣ ଗାଇ
ଅବିରତ ହେଉଥିବି ଉଲ୍ଲାସ ॥ ୩ ॥

ହେ ରାଧାରମଣ    ଶରଣ-ରକ୍ଷଣ
ଅକାରଣ ନୋହୁ ମୋ ଅଭିଳାଷ ।
ଗଲାବେଳେ ଜୀବ    ତୁଣ୍ଡ ଉଚ୍ଚାରିବ
ହା ରାଧାଗୋବିନ୍ଦ କୁଞ୍ଜ ବିଳାସ ॥ ୪ ॥

ଷଡ଼ ରିପୁଙ୍କର ଦାଉ ଭୟଙ୍କର
ଯେ ଯା ମାର୍ଗେ ଟାଣି ଦେଖାନ୍ତି ତ୍ରାସ ।
ଏକକୁ ଆରେକ- ଦର୍ପୀ ଅତିରେକ
ଜଗା ବସିଛି କରିବାକୁ ଗ୍ରାସ ॥୫ ॥

ଏ ସର୍ବ ବିପଦୁ ରଖ ଭକ୍ତ ବନ୍ଧୁ
ଅନ୍ତର୍ଯ୍ୟାମୀ ନାଥ ହେ ପୀତବାସ ।
ହଂସଜ ଡଗରେ ଆସି ମୋ ଆଗରେ
ଅନ୍ତଃ କାଳେ ଗଲେ ନ ଦେବେ ପାଶ । ॥୬ ॥

ଶ୍ରୀଗୁରୁ ପ୍ରଦତ୍ତ ଦେହ ପାଇ ନିତ୍ୟ
ଧାମେ ଚଳିଯିବି ସେବା ସକାଶ
ଗୋପାଳକୃଷ୍ଣର ଏ ପ୍ରାର୍ଥନା ଗିର
ବ୍ୟର୍ଥ ନୋହୁ ହର ଅନ୍ତର ପ୍ରାସ ॥ ୭ ॥



# ଓଜଶୀଳ ଭୋଜ-ରାଜ

ଯଦୁମଣି ମହାପାତ୍ର

ଓଜଶୀଳ ଭୋଜ-ରାଜ          ଜୀବନ ହରଣେ ତେଜ
ଅର୍ପଣ କଲ କୃପଣ ନୋହି
ଗଭୀର ଜଳେ କୁମ୍ଭୀର          ଗଳ ଗ୍ରହଣେ କୁମ୍ଭୀର
ଜୀବରକ୍ଷା କଲ କକ୍ଷା ବହି
ହେ ନୀଳାଚଳ କଳାକର          ସତ କିଏ ମିଛ ?
ଦେଲ ଯାହା ନେଲ ତାହା          ଏଥକୁ କିମ୍ପାଇ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥ ୧ ॥

ବଳି ବଳିଷ୍ଠ ବାଳିକି          ଅକଳିତ ବିଭୂତିକି
ଦଳିତ କରରେ କରିଥିଲ
ନ ମାନି କରି ରମାକୁ          ଅକିଞ୍ଚନ ସୁଦାମାକୁ
ବିପୁଳ ସଂପଦେ ମଣ୍ଡିଦେଲ
ହେ ନୀଳାଚଳ କଳାକର          ସତ କି ଏ ମିଛ ?
ଦେଲ ଯାହା ନେଲ ତାହା          ଏଥକୁ କିମ୍ପାଇ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥ ୨ ॥

ଗୋକୁଳ-କଳଧଉତ          ଗଉରାଙ୍ଗୀଙ୍କ ମହତ
ନେଇଥିବା ସକାଶରୁ କରି
ଦ୍ରୁପଦ ନୃପ-ନନ୍ଦନା          ମହତ-ହର-ବେଦନା-
ବିନାଶନେ ହେଲ ଧନ୍ୱନ୍ତରୀ
ହେ ନୀଳାଚଳ କଳାକର          ସତ କି ଏ ମିଛ ?
ଦେଲ ଯାହା ନେଲ ତାହା          ଏଥକୁ କିମ୍ପାଇ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥ ୩ ॥

ପାତକି-ମୁକଟ ଶ୍ରେଣୀ ଶିରୋମଣି ଯଦୁମଣି
ମନ ଟିଳେ ନେଇ ନ ପାରିବ
ଏହା ଉଦ୍ଧାରଣେ ଯେବେ ଚିତ୍ତ ଦେଇପାର ଲବେ
ତେବେ ସିନା ଦାତା ବୋଲାଇବ ହେ
ହେ ନୀଳାଚଳ କଳାକର ସତ କି ଏ ମିଛ ?
ଦେଲ ଯାହା ନେଲ ତାହା ଏଥକୁ କିମ୍ପାଇ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥ ୪ ॥



# ଚକା ନୟନକୁ ତକାରେ ମାନସ

## ଯଦୁମଣି ମହାପାତ୍ର

ଚକାନୟନକୁ ତକାରେ ମାନସ ।
ଚକାନୟନକୁ ତକା
ନାଲିକ ବନ୍ଧୁଜ ନାଲିନେତ୍ର ତେଜ
କରି ପାରନ୍ତି ସେ ଫକା । ଘୋଷା ।

ଯାହା ବିଜେ ଭଜେପଢ଼ି ଚାରି ଭୁଜେ
ବିହରେ ବିଲୋମେ କକା
ଦର୍ଶନ ମାତ୍ରକେ ଯେ ଅଘ ଲଙ୍ଘନ
କଲେ ମଘବାରି କକା ॥୧ ॥

ପଶୁ ତୀର୍ଯ୍ୟକେ ଦୁଷ୍ଟପଣ ସର୍ଜ୍ଜକେ
ସୃଷ୍ଟ ଯେଉଁ ଷଣ୍ଢା ବକା
ଯୁଗଳ ବିଘାତ ସର୍ଜ୍ଜି ବର୍ଜ୍ଜି ଦେଲେ
ଅର୍ଜ୍ଜିତ ଦୃଦିନ ଦକା ॥୨ ॥

ବାଜା-ବଜି ପାପୀ ରାଜା ଅଜାମିଳ
ପୁତ୍ରକୁ ଡାକିବା ଢକା
ଗରିଷ୍ଠ ନଷ୍ଟ ଦୂରିଷ୍ଠ ପାପିଷ୍ଠକୁ
ତ୍ୱରିତେ ମାଇଲେ ଧକ୍‌କା ॥ ୩ ॥

ନିନ୍ଦା ସ୍ତୁତି ଭକ୍ତି ଘେନି ମୁକ୍ତି ଦେବା
ଶକ୍ତି ମନ୍ତ ପରେ ପକା
ଚେଦିରାଜ ପୁତ୍ର ନଦୀଜ ପବିତ୍ର
ପାତ୍ରକୁ ଯେ କଲେ ଏକା ॥ ୪ ॥

ମହା ମହିମବନ୍ତ ବୋଲି ଯା' ନାମେ
ବ୍ରହ୍ମାଣ୍ଡେ ବାଜଇ ଢକା
ମାନକୁ ଛଡ଼ାଇ ସେ ମାନଗୋବିନ୍ଦ
ନୃପକୁ କଲେ ଟି ବୋକା ॥ ୫ ॥

ଯଦୁମଣି ଭଣେ କଲା କର୍ମ ଗୁଣେ
ରଖିବେ ନାହିଁ ବଡ଼ କା
ନୀଳାଚଳ ଚୂଳେ ନୀଳଚକ୍ରେ ଲୁଲେ
ପାପୀ ପାବନ ଫଡ଼କା ॥୬ ॥



# ଜଗନ୍ନାଥ ହୋ କିଛି ମାଗୁନାହିଁ ମୁଁ ତୋତେ

## ବନମାଳୀ ଦାସ

(ରାଗ-କାମୋଦୀ, ଭଜନ ବୃତ୍ତ)

ଜଗନ୍ନାଥ ହୋ...
କିଛି ମାଗୁନାହିଁ ମୁଁ ତୋତେ
ଧନ ମାଗୁ ନାହିଁ    ଜନ ମାଗୁ ନାହିଁ
ମାଗଛି ଶରଧା ବାଲିରୁ ହାତେ ॥୦॥

ଆନ ଦରଶନ    ନଲୋଡ଼େ ନୟନ
ଏକା ତୋହ ଦେଖା ବିନା
ଶୁଣିବାକୁ କାନ    ନ ଇଛଇ ଆନ
ତୋହ ଚରିତେ କାମନା ॥୧॥

ରସନା ନ ବାଞ୍ଛେ    ଗ୍ରାମ୍ୟ ଗୀତ ଗାଇ
-ବାକୁ ରଜନୀ ଦିବସ
ତୋହ ନାମାବଳୀ    କେବଳ ଶଙ୍ଖାଳି
ହୋଇଥାଉ ପୀତବାସ ॥୨॥

ନାସା ମୋର ତୃପ୍ତି    ନ ଲଭଇ ଆନ
ସୁବାସ ଦ୍ରବ୍ୟ ଆଘ୍ରାଣେ
ତୋହ ଛଡ଼ା-ମାଳ    ତୁଳସୀ କୁସୁମ
ଚନ୍ଦନ କର୍ପୂର ଧ୍ୟାନେ ॥୩॥

ମୋ ହସ୍ତ ଅଙ୍ଗୁଳି    ରାମ ବନମାଳୀ
ହରେ କୃଷ୍ଣ ଜପୁଥାଉ
ବୋଲେ ବନମାଳୀ    ମୋ ବେନି ଚରଣ
ତୋ ତୀର୍ଥ ଦର୍ଶନେ ଯାଉ ॥୪॥



# ଏହି ଅଳି ଶ୍ରୀଛାମୁରେ

## ବନମାଳୀ ଦାସ

(ରାଗ-ମାୟାମାଳବ ଗୌଡ଼ା)

ଏହି ଅଳି ଶ୍ରୀ ଛାମୁରେ ଦୀନବନ୍ଧୁ !
ଏହି ଅଳି ଶ୍ରୀ ଛାମୁରେ
ଶ୍ରୀ ରଙ୍ଗାଚରଣ ସେବାରେ ମୋ ମନ
ରହିଥାଉ ନିରନ୍ତରେ ॥ ଘୋଷା ॥

ଦାନାକନା ପଛେ ମନା ହେଉ ମୋତେ
ନୀଳଚକ୍ର ବାନା ଚାହିଁ
ଖୁସି ହେଉଥିବି ଅଖିଳ ପତି ହେ
ନିର୍ଦ୍ଦୟ ହୋଇବ ନାହିଁ ॥୧॥

ବାରମାସେ ତେର ଯାତ୍ରା ଦେଖୁଥିବି
ଶ୍ରୀ କ୍ଷେତ୍ରେ ହୋଇ ଭିକାରୀ
ସାଧୁ ସନ୍ଥଙ୍କର ବୋଲାଇ କିଙ୍କର
ମାଗୁଥିବି ମାଧୁକରି ॥୨॥

ଆନନ୍ଦ ବଜାରେ ବୁଲି ମୁଁ ମଜାରେ
ଗାଉଥିବି ତୋର ନାମ
ତୋ ପ୍ରେମ ସାଗରେ ବୁଡ଼ି ଯାଉଥିବି
ବୋଲି ହରେ କୃଷ୍ଣ ନାମ ॥୩॥

ଏଥିପାଇଁ କୁଳମୂଳ ହରାଇଛି
ସାଥି କରି ତୋତେ ଏକା
ଦାସ ବନମାଳୀ ଦୋଷ ନ ଧରିବୁ
ଗୋବର୍ଦ୍ଧନ ଗିରି ଟେକା ॥୪॥



# ମହାବାହୁ ! କାହାକୁ କହିବି ଦୁଃଖ ?

## ବନମାଳୀ ଦାସ

ମହାବାହୁ ! କାହାକୁ କହିବି ଦୁଃଖ ?
ତୁମ୍ଭେ ଥାଉଁ ଥାଉଁ        ଦୁଃଖୀ ଜନବଂଧୁ
ଚିକ୍‌କଣ କଳା ଶ୍ରୀମୁଖ ॥ ଘୋଷା ॥

ପତିତପାବନ        ଗତି ଦାୟକ ହେ
ଅତି ତ ଅରକ୍ଷ ମୁହିଁ,
କତିରେ ତୁମ୍ଭର        ଏତିକି ଜଣାଣ
ଛାମୁ ଛଡ଼ା ହେବି ନାହିଁ ॥ ୧ ॥

ଟେରା ବାଡ଼ ପଛେ        ଉଭା ହୋଇଥିବି
ଧୂପ ଅବକାଶ ବେଳେ,
ଛେରା ପହଁରା        ନଉକରୀ ପଣରେ
ଖଟଣି ଖଟିବି ହେଳେ ॥ ୨ ॥

ଛତିଶ ନିଯୋଗୀ        ମଧ୍ୟରେ ଗଣିବ
ମହିମା ହେ ମୋତେ ନିତି,
ଢାଳୁଥିବି ଭାବେ        ଚାମର ଆଲଟ
ଗାଇ ତୁମ୍ଭ ଗୁଣ ଗୀତି ॥୩ ॥

ସେବାରୁ ଅନ୍ତର        ନ ହୋଇବି ପ୍ରଭୁ
ଏହି ଅଳି ଶ୍ରୀଚରଣେ
ମରଣ ଅବଧି        ଶ୍ରୀମୁଖ ଦର୍ଶନୁ
ବଞ୍ଚିତ ନୋହିବି କ୍ଷଣେ ॥ ୪ ॥

ଭୁକ୍ତି ମୁକ୍ତି ମୋର ଲୋଡ଼ା ନାହିଁ କିଛି
ନ ଲୋଡ଼ଇ ବଡ଼ ପଣ,
କେବଳ ଶ୍ରୀପାଦ ପଦ୍ମରେ ଭକତି
ରହିଥାଉ ଅନୁକ୍ଷଣ ॥ ୫ ॥

କନ୍ଧେ ବହି ଝୁଲି ଶ୍ରୀ କ୍ଷେତ୍ରରେ ବୁଲି
ଜୟ ଜଗବନ୍ଧୁ ବୋଲି,
ଆନନ୍ଦେ କୀର୍ତ୍ତନ ନର୍ତ୍ତନରେ ଦିନ
ହରୁଥାଉ ବନମାଳୀ ॥ ୬ ॥



# ମଣିମା ହେ ! ଏତିକି ମାଗୁଣି ମୋର

ବନମାଳି ଦାସ

ମଣିମା ହେ! ଏତିକି ମାଗୁଣି ମୋର
ମରଣ କାଳରେ          ଦରଶନ ଦେବ
କଳାମୁଖ କଳାକର । ॥ ଘୋଷା ॥

ମଥାରେ ଥିବ ମୋତୁମ୍ଭ ଛଡ଼ାମାଳ
ମୁଖରେ ଥିବ ତୁଳସୀ,
ମନେ ମନେ ଭାବି          ରଟି ହେଉଥିବି
ନୀଳାଦ୍ରି ଶିଖର ବାସୀ ॥ ୧ ॥

ମହାବାହୁ ଟେକା          ଶ୍ୱେତ ପଦ୍ମ ଚକା
ନୟନକୁ ନିତି ଚାହିଁ,
ମଜ୍ଞାରେ ପୁଲକ          ପୁରୁଥାଉ ରଙ୍କ-
ନିଧି,ଦୁଃଖୀଜନ ପାଇଁ ॥୨ ॥

ମଙ୍ଗଳ ଆଳତି          ଅବକାଶ କାଳେ
ଗରୁଡ଼ ପଛରେ ଥାଇ,
ମୋହି ହେଉଥିବି          ପ୍ରତି ନିଶାନ୍ତରେ
ତୁମ୍ଭ ଗୁଣ ଗାଥା ଗାଇ ॥୩ ॥

ମଞ୍ଜୁଳ ବଡ଼ ସିଂ-          ହାର ବେଶ ଦେଖି
ମାରୁଥିବି କକ୍ଷତାଳି,
ମରୁଆ ଦୟଣା          ମାଳିଆକୁ ଏତେ
ଅଳି କରେ ବନମାଳୀ ॥ ୪ ॥



# ମହାବାହୁ ! ଏହି କଥାରେ ମୋ ମନ

## ବନମାଳି ଦାସ

(ରାଗ-ସାବେରୀ, ଚନ୍ଦନ ଯାତିଆ ଭଜନ-ବୃତ୍ତ)

ମହାବାହୁ ! ଏହି କଥାରେ ମୋ ମନ
ନିତି ଦେଖୁଥିବି ନିଳାଦ୍ରି ମଣ୍ଡପେ
କଞ୍ଜ ସୁନ୍ଦର ବଦନ ॥ ଘୋଷା ॥

ଅଞ୍ଜଳିରେ ଜଳ ପିଇ ପିନ୍ଧୁଥିବି
ବକଳ କରି ବସନ
ଶଚୀପତି ପଦ ତୁଚ୍ଛ ମଣୁଥିବି
ଥିଲେ ତୁମ୍ଭ ସନ୍ନିଧାନ ॥୧ ॥

ଲୋଭୀ ହୋଇଥିବି ଅର୍ଦ୍ଧ ଚନ୍ଦ୍ର ମୁଖ
ଚନ୍ଦନ ଲାଗି ବେଳକୁ
ଧୀରେ ଚାହୁଁଥିବି ବିପୁଳ ଭୁଜକୁ
ସୁଭଦ୍ରା କାମ ପାଳକୁ ॥୨ ॥

ଅବକାଶ ମାନଙ୍କରେ ମୋ, ଲାଳସ
ହୋଇଥିବ ଅହର୍ନିଶ
ତେତେବେଳେ ଡୋଳେ ହେଲେ ନ ଦେଖିବି
ବ୍ରହ୍ମ ରୁଦ୍ର ଦୀନଈଶ ॥୩ ॥

ତିନି ବଦନ ଚନ୍ଦ୍ରକୁ ଚାହିଁ ମୁହିଁ
ତାପ ତ୍ରୟକୁ ନାଶିବି
ବୋଲେ ବନମାଳୀ ଜନ୍ତୁପତି ପାଖ-
ଲୋକଙ୍କୁ ଦେଖି ହସିବି ॥ ୪ ॥



# ନୀଳାଞ୍ଚଳେ କେଉଁଠାରେ

## ହାଡ଼ି ଦାସ

ନୀଳାଞ୍ଚଳେ କେଉଁଠାରେ ପୁଣ
କାଳିଆ ଭୁଆଁକୁ ଦେଖିଛ କି କେ ?
ମୁହଁଟା କାଳିଆ ପେଟୁଟା ନାଳିଆ
ଚକା ଚକା ହୋଇ ଚକ୍ଷୁଟା ଗୋ ସେ ॥୦॥

ଦ୍ୱିତୀୟା ଚନ୍ଦ୍ର ପ୍ରାୟେ ଦିଶେ ବଦନ
ବଡ଼ ଗୋରାକିଆ ଅଟନ୍ତି ଗୋ ସେ,
ଲକ୍ଷେ ଭରଣ ଚାଉଳ ଭାତ ଖାଇ
ପୋଖରୀଏ ପାଣି ପିଅନ୍ତି ଶୋଷେ ॥୧॥

ତ୍ରିମଣ୍ଡି ମୂଳ କର୍ଣ୍ଣେ କୁଣ୍ଡଳ
ଗଳେବ୍ୟାଘ୍ର ନଖ ଲୁଲୁ ଥାଇ ସେ
ହୃଦରେ ପଦକ କଉଡ଼ିଆ ମାଳ
ଅଧରେ ଦ୍ରହାସ ବିକଶଇ ସେ ॥ ୨ ॥

ଶ୍ରୀବତ୍ସର ପାଦ ହୃଦକୁ ଲାଞ୍ଛନ
କଉସ୍ତୁଭ ମଣି ଅଳକା ବେଶେ,
ଅଳକା ଲଗାଇ ଜଳକା ପରାଇ
ବାଙ୍କେ ବାଙ୍କେ କରି ଚାହାନ୍ତି ଗୋ ସେ ॥ ୩ ॥

ସ୍ଥାବର ଜଙ୍ଗମ କୀଟ-ପତଙ୍ଗରେ
ସବୁଠାରେ ଲାଗି ବିଲଗ ଦିଶେ
କହିଲା ନିକର ହାଡ଼ିଆ କମାର
ଅବଧୂତ ବାନା ଅଧମ ଆଶେ ॥ ୪ ॥



# ରତ୍ନ ସିଂହାସନ ମଉଡ଼ମଣିକି

**ହାଡ଼ି ଦାସ**

ରତ୍ନ ସିଂହାସନ ମଉଡ଼ମଣିକି
କହିବୁ ଟିକି କଥାଏ ।
ମହୋଦଧି କୂଳେ କଳ୍ପବଟ ମୂଳେ
କରି ଅଛନ୍ତି ବିଜୟେ ॥ପଦ॥
ସେ ଚାନ୍ଦବଦନ ପଙ୍କଜ ଲୋଚନ
ଥାଉ କିମ୍ବା ଏନେ ଭୟେ ।
ଭାତ ନ ମିଳଇ ତୁଣ ନ ମିଳଇ
ଲୁଣ ବିନା ବଡ଼ ଭୟେ ॥୧॥

ଅଧୁଲି ଭିତରେ ଟଙ୍କା ଗୁପ୍ତ ଅଛି
ସଂସାର ଅନ୍ଧାରମୟେ ।
ମୋହ ପାଇଁ କିଛି ଧନ ମାଗୁଛି କି ?
ନ ଶୁଣ ଦେବାଧି ରାୟ ॥୨॥

କିପରି ଦ୍ରୌପଦୀ ଲଜ୍ଜାକୁ ରଖିଲ
ଏବେ କି ପାଶୋର ଯାୟେ ।
ତୁମ୍ଭଙ୍କୁ ତୁମ୍ଭ ଭକ୍ତରାଣ ଅଟଇ
ଯେବେ ନୋହିବେଟି ନ୍ୟାୟେ ॥୩॥

ଛତିଆ ଗ୍ରାମରେ ରହି ଦୀନ ହାଡ଼ି
ଜଣାଉଛି ପଦ୍ମପାୟେ ।
ମୋହ କର୍ମକୁ ଯେ ବଧିର ହେଲକି
ନ ଶୁଣ ହେ ଦୟାମୟେ ॥୪॥



# ମୁଁ କ୍ଷେତ୍ର ଯିବି

## ଆର୍ତ୍ତ ଦାସ

ଗୋଡ଼ ଯୋଡ଼ିକ ଥାଇ ବୋଇଲା
ସତ ମୋ ବଚନ ରାମା ସତ ମୋ ବଚନ ।
ମୁଁ କ୍ଷେତ୍ର ଯିବି,
ଭଗନ୍ନାଥଙ୍କ ଶରଧାବାଲିରେ ନିତି ଚାଲୁଥିବି । ୧ ।

ହାତ ଯୋଡ଼ିକ ଥାଇ ବୋଇଲା
ସତ ମୋ ବଚନ ରାମା ସତ ମୋ ବଚନ ।
ମୁଁ କ୍ଷେତ୍ର ଯିବି,
ଜଗନ୍ନାଥଙ୍କ ଗରୁଡ଼ ଖମ୍ବ ନିତି କୁଣ୍ଢାଇବି । ୨ ।

ଆଖି ଯୋଡ଼ିକ ଥାଇ ବୋଇଲା
ସତ ମୋ ବଚନ ରାମା ସତ ମୋ ବଚନ ।
ଜଗନ୍ନାଥଙ୍କ ଚକାଡ଼ୋଳା ଦେଖିବାକୁ ମୋ ମନ ।
ମୁଁ କ୍ଷେତ୍ର ଯିବି,
ଜଗନ୍ନାଥଙ୍କ ଚକାଡୋଳା ନିତି ଦେଖୁଥିବି । ୩ ।

କାନ ଯୋଡ଼ିକ ଥାଇ ବୋଇଲା
ସତ ମୋ ବଚନ ରାମା ସତ ମୋ ବଚନ
ଜଗନ୍ନାଥଙ୍କ ଘଣ୍ଟାମାଡ଼ ଶୁଣିବାକୁ ମୋ ମନ ।
ମୁଁ କ୍ଷେତ୍ର ଯିବି,
ଜଗନ୍ନାଥଙ୍କ ଘଣ୍ଟାମାଡ଼ ନିତି ଶୁଣୁଥିବି । ୪ ।



# ଜଗନ୍ନାଥ ହେ ଫେଡ଼ ମୋ ଆରତ

## ଆର୍ତ୍ତ ଦାସ

ଜଗନ୍ନାଥ ହେ, ଫେଡ଼ ମୋ ଆରତ ।
ଶ୍ରୀପାଦ ପଦ୍ମରେ ପ୍ରତି ମୁହୂର୍ତ୍ତରେ ରହିଥାଉ ମୋର ଚିତ୍ତ । ପଦ ।

ଶ୍ରୀ ନୀଳାଚଳରେ ଭ୍ରାତାଙ୍କ ସଙ୍ଗରେ
ଭଗ୍ନିକି ଘେନି ବିଜୟ ସାକ୍ଷାତ,
ପତିତପାବନ ନାମକୁ ବହିଣ
ଶଙ୍ଖ ଚକ୍ର କରେ ଧରି ଅଛତ । ୧ ।

ତ୍ରେତୟା ଯୁଗରେ ଅହଲ୍ୟା ସୁନ୍ଦରୀ
ପାଦ ଲାଗି ହୋଇଗଲା ମୁକତ,
କିଷ୍କିନ୍ଧା ନଗରେ ବାଳୀକି ମାଇଲ
ସୁଗ୍ରୀ ସଙ୍ଗେ ପଥଭୁ ହେଲ ମଇତ୍ର । ୨ ।

ଲଙ୍କା କଟକରେ ରାବଣକୁ ମାରି
ବିଭୀଷଣେ ଶାଢ଼ୀ ଦେଲ ତୁରିତ,
ଅଯୋଧ୍ୟା ନଗରେ ଯୁବରାଜ ହେଲ
ଦୟାଳୁ ବୋଲାଅ ଜଗତନାଥ । ୩ ।

ଲକ୍ଷେ ଯୋଜନରେ ଗଜ ଡାକଦେଲା
ସେ ଡାକ ଶୁଣିଲ କମଳାକାନ୍ତ,
ଚକ୍ରକୁ ପେଶିଲ ଗ୍ରାହ ବିନାଶିଲ
ସେଠାରୁ ଗଜତ କଲ ମୁକତ । ୪ ।

କୁରୁ ସଭାତଳେ   ଉଲଗ୍ନ କାଳରେ
ଦ୍ରୌପଦୀ ଚିନ୍ତିଲା ହୋଇ ଆରତ,
କୋଟି ବସ୍ତ୍ର ଦେଇ   ତାକୁ ଉଦ୍ଧରିଲ
ସେ ଦିନୁ ପାଞ୍ଚାଳୀ ଶରଣାଗତ । ୫ ।

ବେଳକୁ ବେଳକୁ   ଘଟିଲାଣି କାଳ
ଆଶ୍ରା କରିଛି ଶଙ୍ଖଚକ୍ର ହସ୍ତ,
ଭଣଇ ଆରତ   ଗୁଡ଼ିଆର ସୁତ
ସପତ ବ୍ରହ୍ମାଣ୍ଡେ ନାମା ବିଖ୍ୟାତ । ୬ ।



# ପ୍ରଭୁ କି ସୁନ୍ଦର ଦିଶ ବସି ରତ୍ନ ସିଂହାସନ

## ଆର୍ତ୍ତ ଦାସ

ପ୍ରଭୁ କି ସୁନ୍ଦର ଦିଶ
ବସି ରତ୍ନ ସିଂହାସନ,
ପାପୀମାନେ ତରିଗଲେ
କରି ତୁମ୍ଭ ଦରଶନ । ପଦ ।

ଶଙ୍ଖଚକ୍ର ଗଦାପଦ୍ମ
ଦେଖିଣ ଆନନ୍ଦ ମନ
ମସ୍ତକେ ପୂର୍ଣ୍ଣିମା ଚାନ୍ଦ
ଦିଶେ କେଡ଼େ ଶୋଭାବନ । ୨ ।

ମାଳମାନ ଲମ୍ବିଥାଇ
ପାଦତଳ ଯାଏଁ ରହି
ବାସନାରେ ଚହଟଇ
ପଭୁ ତୁମ୍ଭ ଅଙ୍ଗମାନ । ୩ ।

କଟୀତଟେ ପୀତାମ୍ବର
ଲମ୍ବିଥାଇ ପାଟଡୋର
ବାଙ୍କ ଚାହାଣି ତୁମ୍ଭର
ଅଙ୍ଗେ କର୍ପୁର ଚନ୍ଦନ । ୪ ।

ସୁବର୍ଣ୍ଣରେ ହସ୍ତପାଦ
ନ ଶୁଣ ହେ ଭକ୍ତ ଭେଦ
ଭାବି କହେ ଆର୍ତ୍ତ ଛାର
ଦୀନ ଡାକକୁ ନ ଶୁଣ । ୫ ।



# ପତିତ ଜନଙ୍କୁ ଉଦ୍ଧାରିବା ପାଇଁ

## ନିତ୍ୟାନନ୍ଦ ଦାସ

ପତିତ ଜନଙ୍କୁ ଉଦ୍ଧାରିବା ପାଇଁ
ଉଡ଼ାଉଅଛ ପତାକା
ବାହୁ ଟେକି ତୁମ୍ଭେବସି ଚାହୁଁ ଚାହୁଁ
ବିପତ୍ତି କରୁଛି ଡକା ମହାପ୍ରଭୁ ହେ ॥୦॥

ନାଶ ଗଲେ ତୁମ୍ଭେପରେ କି କରିବ
କରୁଣା ଭଣ୍ଡାର ଫେଇ
ଦୁଃଖୀ ଗଲେ ନାଶଅର୍ଜ୍ଜିବ କି ଯଶ
ପଛେ ଚଉବର୍ଗ ଦେଇ ମହାପ୍ରଭୁ ହେ -॥୦୦॥

ଘୋର ନବଘନ ଥାଉଁ ଯେବେ ଦୀନ
ଚାତକ ଜୀବନ ହରାଇବ
ସମୁଦ୍ରେ ବରଷି ଘୋର ଜଳରାଶି
ଚାତକ ବନ୍ଧୁ କି ବୋଲାଇବ ॥୧॥

ମାଲତୀ-ବକୁଳ-ବିକଚ-କମଳ
ବନଥିବ ଅଳି ଯେବେ ମରି
ପୂର୍ଣ୍ଣ ସୁଧାକର ଅନାଇ ଚକୋର
ମାଳିକା ଯେବେ ମରିବେ ଝୁରି ॥୨॥

କଳ୍ପ ଲତା ତଳେ ଥାଇ ଯେ ମୁଁ ଫଳେ
ନିରାଶ ହୋଇବା କେଡ଼େ ଲାଜ
ରତ୍ନାକର ହୋଇ ରତ୍ନରଙ୍କ ଯହିଁ
ଏ କଥା କେମନ୍ତେ ଦେବରାଜ ॥୩॥

ଥାଉଁ ଗଙ୍ଗା କୂଳେ ପରାଣ ବିକଳେ
ତୃଷାରେ ଯେବେ ହରିବ ପ୍ରାଣ
ଦିନମଣି ଥିବ ଅନ୍ଧାର ହୋଇବ
ଏ କଥା ପ୍ରଭୁ ମନକୁ ଆଣ ॥୪॥

କ ସାମନ୍ତ ଯେ ଚତୁର୍ବର୍ଗ ଅଧିକାରୀ
ଲକ୍ଷ୍ମୀ ପରିବାରୀ ଥିବେ ହୋଇ
ଏମନ୍ତ ସାମନ୍ତ ଆଶା କରି ଭୃତ୍ୟ
ଭିକ୍ଷା ମାଗୁଥିବ ଦୁଃଖ ପାଇ ॥୫॥

ଏଥୁ ଅଧିକ କି ଅଛି ଲୋକ ହସା
ଆଉ କି ରହିଲା ପ୍ରଭୁ ଆଣି
ଝମକିଲା ସିଂହ ପ୍ରାୟ ଝମକିବା
ବି ଅର୍ଥ ଧରିବା ଚକ୍ରପାଣି ॥୬॥

ଦୀନବଂଧୁ ବୋଲି ନାମ ଯେ ବହିଛି
ଏହା ନ ଚେତ କି ଭାବଗ୍ରାହୀ
ଏବେ ଏ ନାମ ଏଣିକି ନ ବହିବ
ଚକ୍ର ପରୁ ନେତ ଥୁଅ ନେଇ ॥୭॥

ତେବେ ତୁମ୍ଭଙ୍କୁ କେ କାହିଁକି କହିବ
କର୍ମ ଆଦରି ସହିବ ଦୁଃଖ
ନିରାଶ ଜଳଧି ତୁମ୍ଭ ନାମ ସିଦ୍ଧି
ଜଗତରେ ବାଜିଯିବ ଡାକ ॥୮॥

ଆଉ ଭୁବନରେ ଠାକୁର ଖୋଜିବା
ତୁମ୍ଭପରି କେହି ଥିଲେ ଜଣେ
ଦୁଃଖୀ ଲୋକଙ୍କର ଦୁଃଖ ହରୁଥିବେ
କୃପା ବିଲୋକନ ନେତ୍ର କୋଣେ ॥୯ ॥

ସୁଦର୍ଶନ ନାମେ ଚକ୍ର ବହିଥିବେ
ଟେକି ବାହୁରେ ଦକ୍ଷିଣ କରେ
କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ
ମୋହର ଶରଣ ତାଙ୍କ ଠାରେ ॥୧୦॥



# ତୁମ୍ଭେ ପରା ପ୍ରଭୁ ଥାଉଁ ଥାଉଁ ମୁଁ ଯେ

## ନିତ୍ୟାନନ୍ଦ ଦାସ

ତୁମ୍ଭ ପରା ପ୍ରଭୁ ଥାଉଁ ଥାଉଁ ମୁଁ ଯେ
ବୁଡ଼ିଲି ବିପଦ ଜଳେ
ଏତେବେଳେ ପ୍ରଭୁଡାକ ନଶୁଣୁଛ
ଯେତେ ଡାକିଲେ ବିକଳେ
ମହାପ୍ରଭୁ ହେ । ଠା

ଜଳମୀନ ଯେହ୍ନେ ମିହିର ତେଜରେ
ତେମନ୍ତ ହେଲାଣି ଦଶା
ଏଥିରେ କିଞ୍ଚିତେ କରୁଣା ନୋହୁଛି
ମୁଁ ଯେ କରିଛି ଭରସା
ମହାପ୍ରଭୁ ହେ ।ଠଠ ।

ଯେତେ ରୂପେ ଦଣ୍ଡ ଦୁଃଖ ଦେଉଅଛ
କେତେହେଁ କହିବି ମନେ ହେଜି
ସିଂହ ମୃଗ ଆଗେ ପରାଏ ତରଙ୍ଗେ
ଧଇର୍ଯ୍ୟ ବନ୍ଧ ଯାଉଛି ଭାଜି । ୧ ।

ଯେତେରୂପେ ଦୁଃଖ ଦଣ୍ଡ ଦେଉଅଛ
କହିବାକୁ ମୋତେ ଆସୁନାହିଁ
ଯେତେଥିଲା ଆଶ ଆହେ ପୀତବାସ
ଏବେ ତୁମ୍ଭ ନିରାଶକୁ ଚାହିଁ । ୨ ।

ପ୍ରଭୁ ହୋଇ କୃପା ନ କରୁଛ କିପାଁ
ଦୀନ ପତିତଜନଙ୍କ ଠାରେ

ଅତିହିଁ ନିରାଶ ପଣ କରିବାରେ
ଭାସିଗଲି ଶୋକ ନଦୀ ଧାରେ । ୩ ।

ଥାଉଁ ପ୍ରଭୁପଣ କରୁଣା କୃପଣ
ହେବାରୁ ନୀତି କି ନ ଆସଇ
ବୁଡୁଥିଲେ ଭେଳା ତହିଁ କଲେ ହେଳା
ଦାରୁଣ ପଣ କି ଏ ନୁହଇ । ୪ ।

କରୁଣା-ନାବିକ ନାବ ଥାଉଁ କୂଳେ
ଖେଦ ଜଳଧିରେ ଗଲି ବୁଡ଼ି
ତରଳ ତରଙ୍ଗ ଭଉଁରୀ ପ୍ରଖର
ଏମନ୍ତ ନଦୀରେ ଦେଲେ ଛାଡ଼ି । ୫ ।

ମୁଁ ଯେ ମଲେ ମଲି ଭାସିଗଲେ ଗଲି
ତୁମ୍ଭଙ୍କୁ ସିନା ଏ ଅସୁନ୍ଦର
ତୁମ୍ଭ ନାମ ଧରି ହେବା ଏତେ ସରି
ଜଗତେ କିବା ବୋଲିବେ ନର । ୬ ।

ମୋରେ ଦୁର୍ଗତି ଯେତେ ନ ବାଧଇ
ତୁମ୍ଭ ନିନ୍ଦା ଲାଗେ ମରୁଅଛି
ପୂର୍ବର କରୁଣା ଏବେ ଦେଖି ଊଣା
ନିଶି ଦିବା ମନେ ଗୁଣୁଅଛି । ୭ ।

ନାନା ରୂପେ ଶାସ୍ତି ଦେଇ ଦୁଃଖ ହସ୍ତୀ
ଦନ୍ତରେ ଗୁନ୍ଥିବା ମନେ କଲା
ବିପତ୍ତି-କରି-ନାଶନ ତୁମ୍ଭ ବାନା
କିମ୍ପାଇ ନୀଳାଦ୍ରି ସିଂହ ହେଲା । ୮ ।

ଧଇର୍ଯ୍ୟ କମଳ-ବନକୁ ମୋହର
ଧ୍ୱଂସି ପକାଉଛି ପ୍ରବଳରେ

ରଖ ରଖ ପ୍ରଭୁ ପ୍ରମତ୍ତ କେଶରୀ
　　　　ବୋଲି ଜଣାଉଛି ବିକଳରେ । ୯ ।

କେବେ ହେଁ କରୁରା ନଦୀ ନ ବହିଲା
　　　　ବଢ଼ିଲା ସଂକଟ ଗିରିବର
କହେ ନିତ୍ୟାନନ୍ଦ କର୍ମହୀନ ମନ୍ଦ



# ବଡ଼ ପୁଣ୍ୟ ଦିନ, ଦେଖ ରଥପରେ ବିଜେ ଭଗବାନ

**ଭାଗିରଥି ଦେବ**

ବଡ଼ ପୁଣ୍ୟ ଦିନ, ଦେଖ ରଥପରେ ବିଜେ ଭଗବାନ ।
ନାନାବାଦ୍ୟେ ଦିଗମାନ ହୋଏ ପୂର୍ଣ୍ଣ
ସୁଖ ତରଙ୍ଗ ଉଠଇ ଘନଘନ । ପଦ ।

ଦୟାକରି ପ୍ରଭୁ ଭାବଗ୍ରାହୀ ଚତୁର୍ଦ୍ଧା ମୂରତି ଛନ୍ତି ବହି
ଭକ୍ତ ଅଭକ୍ତ ଜଗତ ଜନଙ୍କୁ
ଦେବାପାଇଁ ଶୁଭ ଦରଶନ । ୧ ।

ଏହିଟି ଅଟନ୍ତି ନିରାକାରନୟନ ମନର ଅଗୋଚର
ଜନଙ୍କ ହିତରେ ଏହି ମର୍ତ୍ତ୍ୟପୁରେ
ଅବତରି ଦ୍ୟନ୍ତି ଶିକ୍ଷା ଦାନ । ୨ ।

ଯାଙ୍କ ମହିମାର ସୀମା ନାହିଁ ବୁଝିବାକୁ କାର ସାଧ କାହିଁ
ବ୍ରହ୍ମା ଶିବ ଇନ୍ଦ୍ର ସନକାଦି ବୃନ୍ଦ
ଜାଣି ଲୋଡ଼ନ୍ତି ଯା ଚିରଦିନ । ୩ ।

ବରଷକେ ଥରେ ଗୁଣ୍ଡିଚାରେ ଉତ୍ସବ ଲାଗଇ ନାନାଠାରେ
ଯେ ଯେମନ୍ତ ଭାବେ ଚିତ୍ତ ମଧ୍ୟେ ଭାବେ
ଲଭଇ ତେମନ୍ତ ଫଳ ଜାଣ । ୪ ।

ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ମୁକୁନ୍ଦ ମାଧବ ଦଇତ୍ୟାରୀ
ଦୀନବନ୍ଧୁ କୃପାସିନ୍ଧୁ ଜଗବନ୍ଧୁ
ନାମଜପ ହୃଦେ ଅନୁକ୍ଷଣ । ୫ ।

ଉଚ୍ଚରେ ପକାଅ ହରିବୋଲ          ବିଷୟା ବାସନା ମନୁଭୁଲ
ପରମ ଦୟାଳୁ ଅଟନ୍ତି ଶ୍ରୀହରି
ନାହିଁ ତିଳେ ପରାପର ଜ୍ଞାନ । ୬ ।

କୃତାଞ୍ଜଳି ପୁଟେ ଭାଗିରଥି          ରମାପତି ପଦ୍ମପାଦ ଚିନ୍ତି
ଅତି ବିନୟରେ ଭାଷଇ ଆତୁରେ
ନାଶ ଈଶଭବ ଭୟମାନ । ୭ ।



# ଭଜମନ ଜଗନ୍ନାଥଙ୍କୁ

**ଚଣ୍ଡୀ ଦାସ**

ଭଜ ମନ ଜଗନ୍ନାଥଙ୍କୁ
ନୀଳାଚଳବାସୀ ଦାରୁ ବ୍ରହ୍ମଙ୍କୁ ॥ଘୋଷା ॥

ଭଜିଣ ଭୂଷଣ୍ଡ ହୋଇଲା ଅମର
ଧ୍ୟାୟନ୍ତି ବରୁଣ କୁବେର ଯା'କୁ
ସ୍ୱର୍ଗେ ଶଚୀପତି ଯା' ପାଦକୁ ଚିନ୍ତି
ବାସୁକୀ ଧ୍ୟାଉଛି ପାଦ ପଦ୍ମକୁ ॥ ୧ ॥

ବେଦବ୍ୟାସ ଆଦି ଶୁକ ସନକାଦି
ଧ୍ୟାଉଛନ୍ତି ହୃଦେ ଯାହା ନାମକୁ
ବ୍ରହ୍ମା ବେଦବର ଭାବଇ ପୟର
ପଞ୍ଚାନନ ଭାବୁଛନ୍ତି ଯାହାକୁ ॥ ୨ ॥

ନିତି ଦିବାକର ଅଷ୍ଟ ଦିଗପାଳ
ଧ୍ୟାଉଛନ୍ତି ହୃଦେ ଯାହା ପାଦକୁ
ସ୍ୱର୍ଗ ମର୍ତ୍ତ୍ୟ ଆଦି ପାତାଳ ବୈକୁଣ୍ଠ
ରହିଅଛି ଯାହା ଆଜ୍ଞା ପଦକୁ ॥ ୩ ॥

ଯେଉଁ ନାମ ସୁଧା ଧ୍ୟାଇଣ ବସୁଧା
ରଖିଅଛି ସେହି ସତ୍ୟ ପଦକୁ
ସେ ସତ୍ୟକୁ ଡର ଚନ୍ଦ୍ର ଦିବାକର
ଚଳାଚଳ ସେହୁ ରାତ୍ର ଦିନକୁ ॥ ୪ ॥

ଗଙ୍ଗା ଯା' ପୟର ଭାବି ନିରନ୍ତର
ଚଞ୍ଚଳା ଧାଉଛି ଯା'ର ରୂପକୁ
ସେ ରୂପଦର୍ଶନ କରୁଅଛି ଧ୍ୟାନ
ବାକ୍ୟଦେବୀ ଭଣେ ଯା'ର ନାମକୁ ॥ ୫ ॥

ଯେଉଁ ପାଦପଦ୍ମ ଭାବୁଛନ୍ତି ସାଧୁ
ଭ୍ରମୁଛନ୍ତି ସେ ସାଧନ ଦ୍ୱାରକୁ
ସେ ଦ୍ୱରକା ନାଥ ଭାବେ ଚଣ୍ଡୀ ଦାସ
ନିତ୍ୟେ ପ୍ରଣମଇ ବ୍ରଜପୁରକୁ ॥ ୬ ॥



# ଦେଖିବ କଳା ଧବଳ ରୂପ

ଚଣ୍ଡୀ ଦାସ

ଦେଖିବ କଳା ଧବଳ ରୂପ
ଦେଖିଲେ ଖଣ୍ଡଇ ଏ ଭବ ତାପ । ଘୋଷା ।
ଚଞ୍ଚଳା ଯାହାଙ୍କ ପାଦେ ପରିଚାରୀ
ତାହାଙ୍କ ଦର୍ଶନେ ନପ ରହେ ପାପ,
ନର ଦେହ ବହି କହିତ ନୁହଁଇ
ସୃଜି ସଂହାରୁଛି ଆପକୁ ଆପ । ୧ ।

ଆପେ ବ୍ରହ୍ମାହୋଇ ସୃଷ୍ଟିକି ସୃଜଇ
ଯୋଗୀଙ୍କ ହୃଦରେ କରୁଛି ଜପ,
ପଞ୍ଚାନନ ହୋଇ ପଞ୍ଚମୁଖ ଧାଇ
ନୀଳାଚଳେ ଦେଖ ଚତୁର୍ଦ୍ଧା ରୂପ ।୨ ।

ଏହି ବିଶ୍ୱରୂପ ଆକାଶ ମଣ୍ଡଳେ
ନାରାୟଣ ରୂପେ କରନ୍ତି ତା.
ଚତୁର୍ଦ୍ଦଶ ପୁର ନବଖଣ୍ଡ ମହୀ
ନିରଞ୍ଜନ ରୂପେ ମହା ପ୍ରତାପ । ୩ ।

ସତ୍ୟ ଯୁଗରେ ସତ୍ୟଗୁଣେ ବିହାର
ହୋଇଥିଲେ ଶୁକ୍ଳାମ୍ବର ସ୍ୱରୂପ,
ତ୍ରେତୟା ଯୁଗରେ ରଜେଗୁଣ ବହି
ହରିଥିଲେ ଯାଇ ରାବଣ ଦର୍ପ । ୪ ।

ତମଗୁଣ ବହି ଦ୍ୱାପର ଯୁଗରେ
ଜନ୍ମ ହୋଇଥିଲେ ଶ୍ରୀକୃଷ୍ଣ ରୂପ,
ଶ୍ରୀ ବୃନ୍ଦାବନରେ ରାହସ କରିଣ
କଂସ ନାଶ କଲେ ଛାଡ଼ିଲା ତାପ । ୫ ।

ଏ କଳି ଯୁଗରେ ବୌଦ୍ଧ ଅବତାରେ
ହୋଇଛନ୍ତି ପ୍ରଭୁ ମଉନ ରୂପ,
ବୋଲେ ଚଣ୍ଡି ଦାସ ନେତ୍ର ଦେଖି ନାହିଁ
ଜନ୍ମଜନ୍ମାନ୍ତରେ କରିଛି ପାପ । ୬ ।



# କୃପାସିନ୍ଧୁ ! ଦୀନବନ୍ଧୁ ! କାହିଁକି କରୁଣା ଉଣା ?

## ଗୋବିନ୍ଦ ଭଞ୍ଜ

କୃପାସିନ୍ଧୁ ! ଦୀନବନ୍ଧୁ ! କାହିଁକି କରୁଣା ଉଣା ?
ମୋହପରି ଦୀନ ହୀନ ଧରାଧାମେ ନାହିଁ ଶୁଣା । ଘୋଷା ।

ଭାବି ଯା ନ ଥିଲି ମନେ     ବସାଇ ଉଚ୍ଚ ଆସନେ
ସୁଖ ସଙ୍ଗେ ଦୁଃଖ ଦେବା
ରୀତି ତ ନ ଥିଲା ଜଣା । ୧ ।

ତୃଷାର୍ତ୍ତ ଜନେ ଆଦରେ     ଡାକି ବସାଇ ପାଶରେ
ପିଇବା ଆଗୁଁ ଭଣ୍ଡିଲ
ଯାଚି ସୁମଧୁର ପଣା । ୨ ।

ବିତରି ସଂସାର ସାର     ଫଳକୁ କଲ ଅସାର
ତା'ର କିମୋ ଭାଗ୍ୟ ଦୋଷ
ଭାବି ମୁଁ ହେଉଛି ବଣା । ୩ ।

ତୁମ୍ଭର ମଙ୍ଗଳମୟ     ଇଚ୍ଛାରେ ମୁଁ କରି ଲୟ
ନୋହିଛି ଦୁଃଖିତ ପ୍ରଭୋ
ପଡ଼ି ଏ ବିପଦେ ସିନା । ୪ ।

ନୃପତିସୁତ ଗୋବିନ୍ଦ     ଚିନ୍ତଇ ପଦାରବିନ୍ଦ
ହେ ମଧୁହାରୀ ମୁକୁନ୍ଦ
ମୋ ଦୁର୍ଭାଗ୍ୟ କର ଚୁନା । ୫ ।



# ଦୟାକର ଦୀନବନ୍ଧୁ ! ଶୁଭେ ଯାଉ ଆଜି ଦିନ

## ରାମକୃଷ୍ଣ ପଟ୍ଟନାୟକ

ଦୟାକର ଦୀନବନ୍ଧୁ ! ଶୁଭେଯାଉ ଆଜି ଦିନ
କରଯୋଡ଼ି ତୁମ୍ଭ ପଦେ କରୁଅଛି ନିବେଦନ । ଘୋଷା ।

ଅନାଦି ଅନନ୍ତ ହରି କ୍ଷୀର ସାଗର ବିହାରି
ଲକ୍ଷ୍ମୀଦେବୀ ମନୋହାରୀ ପ୍ରଭୁ ପତିତପାବନ । ୧ ।

ସନ୍ଥ ଶାନ୍ତି ପ୍ରଦାୟକ ଦୁଷ୍ଟ ଶାସ୍ତି ବିଧାୟକ
ରକ୍ମିଣୀ ପ୍ରାଣ ନାୟକ ଜଗତ-ଜନ-ବନ୍ଦନ । ୨ ।

ଜଗଜ୍ଜନ ହିତକାରୀ ଦଶ ଅବତାର ଧାରୀ
ମଧୁସୂଦନ ମୁରାରୀ କାଳୀୟ ଦର୍ପ ଗଞ୍ଜନ । ୩ ।

ଯେଣେ ଚକ୍ଷୁ ପଡ଼େ ନାହିଁ ତୁମ୍ଭ କୀର୍ତ୍ତି ବିରାଜଇ
ଭାବି ଚିତ୍ତ ପୁଲକଇ ହେ ଭକ୍ତ ହୃଦ ଚନ୍ଦନ । ୪ ।

ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ ମୁକ୍ତି ଦାତା ଭଗବାନ
ତୁମ୍ଭ ବିନୁ ନାହିଁ ଆନ କଳି-କଳୁଷ ନାଶନ । ୫ ।

ତୁମ୍ଭେ ତ ସଂସାରେ ସାର ଆଉ ସବୁ ମାୟା ଘୋର
କୃତାନ୍ତ ଭୟୁଁ ଉଦ୍ଧର କହେ ରାମକୃଷ୍ଣ ଦୀନ । ୬ ।



# ହେ ଜଗନ୍ନାଥ ! ଦୟାସାଗର

ଦୁଃଖୀଶ୍ୟାମ ଦାସ

(ରାଗ- ଶଙ୍କରାଭରଣ)

ହେ ଜଗନ୍ନାଥ ! ଦୟା ସାଗର
ମୋହ ବିଷୟରେ କିପାଁ କୃପା ନ କର । ଘୋଷା ।
ପୂର୍ବେ ସୁଗ୍ରୀବର ସଙ୍ଗେ ମୈତ୍ର ହୋଇଲ
(ପଢ଼ି)
ସେଠାରେ ପ୍ରବେଶିଲ ସଙ୍ଗେ ମଇତ୍ର ହେଲ
ମନେ ପ୍ରତେ ଯିବାକୁ ସପ୍ତଶାଳ ଛେଦିଲ
ତଦନ୍ତେ ଦୁନ୍ଦୁଭିର ଅସ୍ଥି ପଦେ ଫିଙ୍ଗିଲ
ମଇତ୍ର ଛଳେ ମାୟା- ଯୁଦ୍ଧେ ବାଳି ମାରିଲ
ସୁଗ୍ରୀବେ ରାଜ୍ୟ ଦେଇ ତାରାକୁ ସମର୍ପିଲ
ବାନର ବଳ ଘେନି ସମୁଦ୍ରେ ସେତୁ କଲ
ଲଙ୍କାଗଡ଼ ବିଧ୍ୱଂସି ରାବଣକୁ ମାଇଲ
ବୁଭିଷଣକୁ ରାଜା ପଣେ ଶାଢ଼ୀ ବାନ୍ଧିଲ
ସୀତାଙ୍କୁ ବନ୍ଧନରୁ ଫିଟାଇଲ ।୧ ।

ପୂର୍ବେ ଗଜରାଜ ସଙ୍ଗେ ମଇତ୍ର କୁମ୍ଭୀର
(ପଢ଼ି)
ଜଳରେ ନେଇ ତାକୁ ପାଦଧରି କୁମ୍ଭୀର
ବିଶ୍ୱାସ କରି ତାକୁ ବହିନେଲା କନ୍ଧର
କରି ହୋଇ କାତର ଡାକିଲା ଆଦିମୂଳ !
ଦ୍ୱାରକା କୁରେ ତୁମ୍ଭେ ସତ୍ୟଭାମା ସଙ୍ଗର
ପଶାର ତାନମାନ ଲାଗିଥିଲା ସେଠାର

ଚକ୍ରକୁ ରାଇ ଆଜ୍ଞା          ଦେଲ କମଳାବର !
ଚକ୍ରତୁ ବେଗେ ଯାଅ          ଶିର ଛେପନ କର
ଆଜ୍ଞାରେ ଚକ୍ରଗଲା          ଶିର ଛେଦନ କଲା
ଗଜକୁ ଉଦ୍ଧାରିଲ ସେଠାର । ୨ ।

ପୁଣି ଗରଭିଣୀ ଏଣୀ ଶିଶୁ ସଙ୍ଗର
(ପଢ଼ି)

ଚରୁଥିଲା ବନରେ          ବ୍ୟାଧ ମିଳି ସେଠାରେ
ପାଶେକ ଶ୍ୱାନ ରଖି          ପାଶେକ ଦେଇ ଜାଲ
ପୂର୍ବ ଦିଗେ ଅନଳ          ଜାଳିଣ   ଖରତର
ଅତି ହରଷଭରେ          ଧାଇ ଆସି ଶବର
ଅଗ୍ରତେ ଉଭା ହୋଇ          ଧରଇ ଧନୁଶର
ମନେ ରଖିଲା ତାର          ରଖ ହେ ଆଦିମୂଳ !
ବାତେ ଛିଡ଼ିଲା ଜାଲ          ଜଳେ ଲିଭେ ଅନଳ
ବଜ୍ରରେ ଶ୍ୱାନ ନାଶ          ମଲା ସେହି ଶବର
ଆନନ୍ଦେ ଏଣୀ ଗଲା ସତ୍ୱର । ୩ ।

ଦୁଃଖୀଶ୍ୟାମ କହେ ଭାବି କଞ୍ଜପଯର
(ପଢ଼ି)

ଆହେ ରଙ୍ଗା ଅଧର          ମୋ ଦୋଷ କ୍ଷମାକର
ମୁହିଁ ହୀନ ପାମର          ଚରଣରେ କିଙ୍କର
ମୋ ଠାରୁ କେହି ଛାର          ନାହିଁ ଏହି ସଂସାର
କ୍ଷମା ନ କଲେ ତୁମ୍ଭେ          କାହାର ହେବି ତେବେ
ତେଣୁ ତୁମ୍ଭ ପାଦରେ          କୋଟି ଜୁହାର କରେ
ନାହିଁ କ୍ଷମତା ମୋର          ତେଣୁ ଅକ୍ଷମ ନର
କର କରୁଣା ମୋତେ          ପାପ ଖଣ୍ଡ ତୁରିତେ
ତୁମ୍ଭେ କରୁଣାକର !          ଏହି କରୁଣାକର
ଭବସାଗରୁ ହେବି ଉଦ୍ଧାର । ୪ ।



# ମନ ! ଭଜରେ ଚିତ୍ତ ! ଭଜରେ ମନ ଭଜରେ

ବଲ୍ଲବ ଦାସ

(ରାଗ-ଲଳିତ ଗୌରୀ)

ମନ ! ଭଜରେ ଚିତ୍ତ !ଭଜରେ ମନ ଭଜରେ
ଅନାଥର ନାଥ ଦେବ ଜଗନ୍ନାଥ
ଦେବ ନାକପଦ ମନ ! ଭଜ ରେ
କାଳ ଏ ସକଳ ସକଳ ପ୍ରବଳ
କଳିକାଳମୋହ ଚିତ୍ତ ! ବର୍ଜରେ । ଘୋଷା ।

ବରଜ ମଣ୍ଡନ ବନଜବଦନ
ଭଜନ ଭାବରେ ମଜ୍ଜରେ
ବନଜଚରଣ ମୂରଲୀବଦନ
ନନ୍ଦସୁତ ଦ୍ୱିଜରାଜ ରେ । ୧ ।

ଆଳୀଙ୍କି ପାଳିଲେ ବାଳିକି ଦଳିଲେ
ବଳି ଛଳି ସୁରରାଜ ରେ
ଟେକି ଗୋବର୍ଦ୍ଧନ ରଖିଲେ ଗୋଧନ
ବରଷ ସପତେ ବ୍ରଜରେ । ୨ ।

ଅସୁର କେଶୀକି ନାଶିଲେ ନ ଶଙ୍କି
ଧ୍ୱଂସିଲେ ଦନୁଜ ରାଜ ରେ
ଉଗ୍ରସେନ ମାଥ ଉଭାରିଲେ ଛତ୍ର
ଉଦେ କଲେ ମଧୁରାଜ ରେ । ୩ ।

ମନ ! କର ମନ        ମଦନମୋହନ
ଶରଣ ଚରଣ କଞ୍ଜରେ
ହରିବ ଦୁରିତ        ହରିର ଚରିତ
ତୁରିତେ ତୁ ଚିତ୍ତ ମଜ୍ଜ ରେ । ୪ ।

ହୋଇଲେ ଶରଣ        ହୋଇବୁ କାରଣ
ରଖିଛି ବନେ ଯେ ଗଜ ରେ
ବୋଲଇ ବଲ୍ଲଭ        ଚରଣ ପଲ୍ଲବ
ବଳେ ଦେବେ ଦେବ ରାଜରେ । ୫ ।



# ଜଗନ୍ମୋହନ ହେ ଜୟ କୃଷ୍ଣ ଜଗନ୍ନାଥ

## କବିଚନ୍ଦ୍ର ହନୁମାନ ରାୟଗୁରୁ

ଜଗନ୍ମୋହନ ହେ ଜୟକୃଷ୍ଣ ଜଗନ୍ନାଥ
ଜଗତ ଭିତରୁ ମୁଁ ନିକି ବାହାର
ଜାଣି କରୁଛ ଅନାଥ । ପଦ ।

ଜବରେ ଯେବେ ମୋ ଜୀବ ନ ତାରିବ
ଜଞ୍ଜାଳ ଜାଲ ପକାଇ
ଜୀମୂତ ଜିଣା ଶ୍ରୀ ଅଙ୍ଗ ହେ କହୁଛି
ଜହର ଦେବି ଟି ଖାଇ । ୧ ।

ଜଗତ ଲୋକେ ବୋଲିବେ ଯାହା ପଛେ
ଜାଣିମ କମଳା ଧବ,
ଜାଣି ଜାଣି ତୁମ୍ଭ ବାନା ବୁଡ଼ାଇବ
ଜଗତୁଁ ଦୀନ ବାନ୍ଧବ । ୨ ।

ଜପ ତ ନ କରେ କ୍ଷଣେ ତୁମ୍ଭ ନାମ
ଜନମ ଠାରୁ ମୋହର,
ଜରାବସ୍ଥାରେ ମୋ ଜଳୁଛି ଜୀବନ
ଯିବ ଜନ୍ତୁ ଥାନପୁର । ୩ ।

ଜଗିବାକୁ ଆଉ କାଳ ନାହିଁ ମତେ
ଯାହା ଇଚ୍ଛା ତାହା କର,
ଯାଇ ନରକରେ ବାସ କଲେ ହେଲେ
ନାହିଁ ମୋ ତହିଁକି ଡର । ୪ ।

ଜୀବନ ଯାକ ତ  ପାପ ମୁଁ କରିଛି
ଜାଣିଛନ୍ତି ଚତୁର୍ଦ୍ଦଶେ,
ଯାହା ମୋ କରମେ  ଲେଖିଥିବ ବିହି
ଜଣା ହେବ କାଳ ବଶେ । ୫ ।

ଯାହାଙ୍କର ବାନା  ଉର୍ଦ୍ଧ୍ୱରେ ଉଡ଼ଇ
ଯେ ପ୍ରଭୁ ଆରତ ତ୍ରାଣ,
ଜୃମ୍ଭା ମାତ୍ରେ କୋଟି  ବ୍ରହ୍ମାଣ୍ଡ ଯେ କରେ
ଆଖର ସେ (ମୋ) ପରିତ୍ରାଣ । ୬ ।

ଜବାବ ନ ଦେଲେ  ଜଣା ପଡ଼ିବଟି
ଜଙ୍ଗମ ଯାକରେ ପୁରି,
ଜହ୍ନୁ ଥରେ ହରି  ହନୁମାନ ମନ
ନାକ ନର୍କ ଏହା କରି । ୭ ।



# ଚକାନୟନକୁ ପତିତ କେହି

## ଚନ୍ଦନ ହଜୁରୀ (ଚାଖି ଖୁଣ୍ଟିଆ)

ଚକାନୟନକୁ ପତିତ କେହି
ଟକାଇ ଖର ନିଃଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ
ବକାରି ମୋ ଆର୍ତ୍ତ ଶୁଣ ସତ୍ୱରେ ହେ
ଢକ୍କା ବାଜୁଛି ମହିମା ହେ
ତକାର କରି କର୍ଣ୍ଣେ ଗିର ନ ଶୁଣ
କାହିଁକି ବିଚିତ୍ର କର୍ମାହେ ॥୧ ॥

କରୀ ହରିଣୀ ଦ୍ରୌପଦୀ ବିପତ୍ତି
ହରି ହରିଛ ପରା ଡେରି ଶ୍ରୁତି
ଦରିଦ୍ର ସୁଦାମାକୁ କୋଟିନିଧି
ପରିପୂର୍ଣ୍ଣେ ଦେଲ କୃପା ବାରିଧି ହେ
ଧରିଯା' ମହିମା ଚିରେ ହେ
ସରିତ ଯାଉଛି ହରି ! ଆଉ ଥରେ
ନ ଚାହିଁଲେ କୃପା ନେତ୍ରେ ହେ ॥ ୨ ॥

ଆଜାନୁ ବାହୁ ! ମୁଁ ପତିତ ଜଣେ
ଅଜାମିଲୁଁ ବଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର
ଧ୍ୱଜା ଚକ୍ରରୁ ବହନ ଉତାର ହେ
ମଜାରେ ମୁଁ ଏହା ଭାବେ ହେ
ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ
ହଜାଇ ଦେଉଛ ଏବେ ହେ ॥ ୩ ॥

ପିତାମାତା ସେବା ମୋର ବିଭଙ୍ଗ
ଲିତାକୁ ଲିତା ମୋ ଅସତ ସଙ୍ଗ
ସୀତାରେ ଅବଗାହି ନାହିଁ ଦିନେ
ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ
ପୀତାମ୍ବର ଚିତ୍ତେ ଚିନ୍ତି ହେ,
କିତାପ ଚିତ୍ରଗୁପତୁଁ ଚିରାଇବ
ମୋ ଅନ୍ତକାଳେ ଯେମିତି ହେ ॥ ୪ ॥

ବଟପୁଟ ବାସୀ ଆରତ ତ୍ରାଣ
ଘଟଘଟକେ ରହି ସବୁ ଜାଣ
ଖଟନ୍ତି ଯେଉଁ ଚରଣେ କମଳା
ହଟକରି ମୋ ଦୁର୍ଦ୍ଦଶା ନ ଗଲାହେ
ନଟବରବେଶ ଧାରୀହେ
ଝଟତିରେ ପ୍ରଭୁ ଶ୍ରୁତିଡେରି ଶୁଣ
ଏ ଦୀନଜନ ଗୁହାରୀ ହେ ॥ ୫ ॥

ପାଣ୍ଡବ ପ୍ରିୟ ! ଦଣ୍ଡୁଛ କି ଦୋଷେ
ଦାଣ୍ଡକୁ ଏ କଥା କେମନ୍ତ ଦିଶେ
ଚାଣ୍ଡରେ ମଇତ୍ର ଛଳେ ଆପଣ
କାଣ୍ଡ କରେ ନେଲ ବାଳୀର ପ୍ରାଣ ହେ
ତାଣ୍ଡବ ନୃତ୍ୟକାରୀଙ୍କି ହେ
ଭାଣ୍ଡ କରିଦେଲ ବିଷକୂଟ ମାୟା
ଲଗାଇଦେଲ ଭେଳିକି ହେ ॥ ୬ ॥

ଧଣ୍ଡାମାଳ ବୁହା ଦୁର୍ଦ୍ଦଶା ରାହୁ
ଚଣ୍ଡାଳ ଗ୍ରାସୁଅଛି ଚାହୁଁ ଚାହୁଁ
ଭଣ୍ଡାରେ ଖଣ୍ଡା ନାହିଁ କି ମଣିମା
ଗଣ୍ଡାକର ଦିଶୁ ନାହିଁ ଗାରିମା ହେ
ହଣ୍ଡା ମୋ ଯାଉଛି ଫାଟି ହେ

ଥଣ୍ଡା କରି କୃପାଜଳ ବୃଷ୍ଟିକର
　　　　ମୋ ଚିତ୍ତ ଚାତକ ପାଟି ହେ ॥ ୭ ॥

ମନ୍ଦରଧର ନୀଳଗିରିବାସୀ
କନ୍ଦରବାସୀ ପ୍ରାୟ ଅଛ ବସି
ପନ୍ଦରନେତ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପୟର ହେ
　　　　ଛନ୍ଦଛାଡ଼ ଦେବରାଜେ ହେ
ନନ୍ଦ ନନ୍ଦନ ଶ୍ରୀଚରଣାର ବିନ୍ଦେ
　　　　ଚନ୍ଦନ ହଜୁରୀ ଭଜେ ହେ ॥ ୮ ॥



# ଜଗତର ନାଥଙ୍କୁ ଯେ ମୁରୁଛି ନୁହଁଇ

**କଞ୍ଚଲତା ଜେମା**

ଜଗତର ନାଥଙ୍କୁ ଯେ ମୁରୁଛି ନୁହଁଇ ।
ଯେଣିକି ଚାହିଲେ ତେଣେ ଶ୍ରୀମୁଖ ଦିଶଇ ॥ ପଦ ॥

ଧନ୍ୟ ତାଙ୍କ ଚକା ଆଖି
ମନ ରହିଥାଏ ଲାଖି ।
ବାହୁ ଟେକିଛନ୍ତି ଦୁଃଖୀ ତାରିବା ପାଇଁ ॥ ୧ ॥

ମାଳମାନ ଲମ୍ବିଥାଇ
ପାଦତଳ ଯାଏ ରହି
ଛାମୁରେ ଗହଳ ଭିଡ଼େ ପଶିନୁହଁଇ ॥୨ ॥

ଯେଣିକି ଦେଲେ ନୟନ
ଦିଶଇ କଳା ବଦନ
କଟୀରେ ଯେ ପୀତାମ୍ବର କି ଶୋଭା ପାଇ ॥ ୩ ॥

କବି କଞ୍ଚଲତା ଜେମା
ବୋଲେ ଦୋଷ କର କ୍ଷମା
ଜେମା ବୋଲେ ପାଦେ ପଡ଼ି ଉଠିବି ନାହିଁ ॥ ୪ ॥



# ପ୍ରଭୁ ନୀଳାଦ୍ରି ବିହାରୀ

ଦିବ୍ୟସିଂହ ଦେବ

(ରାଗ-ସାବେରୀ)

ପ୍ରଭୁ ନୀଳାଦ୍ରି ବିହାରୀ
କଟକେ ଅଟକ ହେବାରୁ ମୋ ଦିନ
ସରୁନାହିଁ ଝୁରି ଝୁରି । ଘୋଷା ।

ମହା ବଳିଆର ଭୁଜ ଦେବରାଜ
ସୁଦର୍ଶନ ଚକ୍ରଧାରି
ଏ ମହା ବିପଦୁ ଉଦ୍ଧରିଲ ନାହିଁ
ନ ଶୁଣିଲ ମୋ ଗୁହାରି ।୧ ।

କନ୍ଦିରୁ ଅଣାଇ ବନ୍ଦି କରାଇଲ
ଶ୍ରୀ ନନ୍ଦିଘୋଷ ବିହାରି
ଛନ୍ଦି କରଦ୍ୱୟ ଦେଖାଉଛି ଭୟ
ଦ୍ୱନ୍ଦୀ ବିଜାତି ପାହାରୀ । ୨ ।

କଳା ଶ୍ରୀବଦନ ଏ ଘୋର କଦନ
ବେଳକୁ ବେଳତ ଭାରି
ଧଳା ଅଶ୍ୱବାଗ ପାଉନାହଁ କିବା
ଲୋଡ଼ି ଲୋଡ଼ି ଦଇତାରି । ୩ ।

କେତେ କାହାକୁ ସଙ୍କଟୁ ରଖି ନାହଁ
କୃପାନିଧି ଦୁଃଖ ହାରି
ମୋହରି ବେଳକୁ ନିର୍ଦ୍ଦୟ-ହୃଦୟ
ହେଉଛ କିସ ବିଚାରି ? । ୪ ।

ସିନ୍ଧୁସୁତାପତି ! ଅବା ମୋ ବିପତ୍ତି
ପ୍ରତାପେ ହେଉଛ ଘାରି
ଦିବ୍ୟସିଂହ ଦେବ କାହାକୁ କହିବ
ଆପଣେ ନ କଲେ ପାରି । ୫ ।



# ନୀଳଚକ୍ରେ ହୋ ଦେଖ ଉଡୁଛି ବାନା

## ଗୌରଚରଣ ଅଧିକାରୀ

ନୀଳଚକ୍ରେ ହୋ ଦେଖ ଉଡୁଛି ବାନା
ପତିତପାବନ ନାମଟି ଯା'ର ନାଁ ॥ ଘୋଷା ॥

ଆସ ଆସ ବୋଲି ପାତକୀ ମାନଙ୍କୁ
ଡାକୁଅଛି ପରା ସଙ୍ଗାତ ଅନା
ନେତ ଧ୍ୱଜାବର ଉଡ଼ି ଫରଫର
ଉଡ଼ାଇ ଦେଉଛି ଭବ ଯାତନା ॥୧ ॥

ପଞ୍ଚକୋଶୀ ଯାଏ ଜନେ ଦେଖାଯାଏ
ଦର୍ଶନେ କଲୁଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ କର ତାଙ୍କ ଲୀଳା
ଶଙ୍ଖ ନାଭି କ୍ଷେତ୍ରେ ବିଚିତ୍ର ସିନା ॥ ୨ ॥

ସଲଖ ସୁନ୍ଦର ବଡ଼ଦାଣ୍ଡ ଶୋଭା
ମର୍ତ୍ତ୍ୟ ମଣ୍ଡଳରେ କାହିଁ ଅଛିନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏ
ଗହଳ ଚହଳ ନୁହେଁ କଳନା ॥ ୩ ॥

ପାପ ଛଡ଼ା ପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଁଇ ମନା
ଆ ଚାଣ୍ଡାଳ ବିପ୍ର ପତ୍ରକେ ଭୁଞ୍ଜିବା
ବଡ଼ ଆଚମ୍ଭିତ ଲାଗଇ ସିନା ॥ ୪ ॥

ଗୌର ଦ୍ୱିଜ ଭଣି ଶ୍ରୀକ୍ଷେତ୍ର ରହଣି
ପାଇଁ କରୁଥାଏ ସଦା ଭାବନା
ସତେ ହେବେ ସାହା ବଳିଆର ବାହା
ସଂପୂର୍ଣ୍ଣ କରିବି ମନ କାମନା ॥ ୫ ॥



# ବଡ଼ ଠାକୁରଙ୍କ ସହୋଦର

## ଗୌରଚରଣ ଅଧିକାରୀ

ବଡ଼ ଠାକୁରଙ୍କ ସହୋଦର ହେ
ମୋ ଜଣାଣେ ନୁହଁ କାଲ
ବଡ଼ ଦାଣ୍ଡେ ବଡ଼ ଭୁଜକୁ ବିସ୍ତାରି
ବଡ଼ ଦେଉଳକୁ ଚାଲ ।।ଘୋଷା ।।

ବଡ଼ପଣେ ବଡ଼ ଛଇକି ଦେଖାଅ
ପିନ୍ଧି ବଡ଼ ଧଣ୍ଡାମାଳ
ବଡ଼ରାଜା କର ଯୋଡ଼ି ଡାକୁଛନ୍ତି
ତାଙ୍କ ଗୁହାରୀ ନ ଟାଳ ।। ୧ ।।

ବଡ଼ପଣ୍ଡା ବଡ଼ ସୁଆର ସେବକ
କଲେଣି ବଡ଼ ପଖାଳ
ବଡ଼ ଠାକୁରାଣୀ ରୋଷ ହେବେ ବଡ଼
ଏକଥା ମନରେ ଭାଳ ।।୨ ।।

ବଡ଼ ପାବଚ୍ଛିଆ ବଡ଼ ଅଳସୁଆ
ପଣଛାଡ଼ ତତକାଳ
ବଡ଼ ନୟନକୁ କିବା ଅଗୋଚର
ବଡ଼ ଦୁଃଖୀଙ୍କ ଜଞ୍ଜାଳ ।।୩।।

ବଡ଼ସିଂହାର ବେଶକୁ ଦରଶନ
କରିବାକୁ ମୋ କଟାଳ
ବଡ଼ ଅରକ୍ଷିତ ଗଉରଚରଣ
ଭଜେ ଶ୍ୟାମ କାମପାଳ ।। ୪ ।।



# ଦୁଃଖ ନାଶନ ଗରୁଡ଼ାସନ ହରି

ଗୌରଚରଣ ଅଧିକାରୀ

ଦୁଃଖନାଶନ　　　ଗରୁଡ଼ାସନ ହରି !
　　ଦୁଃଖ ଜଣାଇବି କାହାକୁ
ଦୀନନାଥ ଥାଉ　　ଅନ୍ଧାର ଘୋଟୁଛି
　ଏ ନିନ୍ଦାଟି ଚଉବାହାକୁ । ଘୋଷା ।

ଚିନ୍ତା ନାବ ପରେ ବସାଇ କରି
　　　ଠେଲିଦେଲ ଯେଣୁ ଯାଉଛି ସରି
ରଖ ରଖ ବୋଲି କାହାକୁ ଡାକିବି,
　　　ଶ୍ରବଣ ତ କଲ ଲୁହାକୁ ।୧ ।

ସୁଦାମା ଦାରିଦ୍ର୍ୟ ଭଞ୍ଜନକାରୀ,
　　　ରଖିଛ ପାଣ୍ଡବେ କୁରୁ ସଂହାରି
ଜଳର ମଧ୍ୟରେ ଗଜକୁ ରଖିଲ,
　　　ଛେଦି ପକାଇଲ ଗ୍ରାହକୁ । ୨ ।

ଅଜାମିଳ ନାମେ ସେ ମହାପାପୀ,
　　　ତରିଗଲା ପୁତ୍ର ନାମକୁ ଜପି
ନାତେକ ମାଇଲା ଶ୍ରୀବସ୍ତ ବ୍ରାହ୍ମଣ,
　　　ହୃଦରେ ବହିଲ ତାହାକୁ । ୩ ।

ବନର ହରିଣୀ ଚିନ୍ତିବା ମାତ୍ରେ,
　　　ଘନେ କୃପାକଲ ପରା ସାକ୍ଷାତେ
ଅର୍କ୍ଷିତ ଡାକୁଛି ନଶୁଣୁଛ ଲଜ୍ଜା,
　　　ନୋହିବକି ଲକ୍ଷ୍ମୀ ନାହାକୁ ।୪ ।

ଯେଉଁ ନାମ ଧରି ପବନ ସୁତ,
　　　ଡେଇଁ ସମୁଦ୍ର ଆଣିଲା ସଂକେତ
ଗଉରଚରଣ ସେ ପାଦେ ଶରଣ,
　　　ହର ବ୍ରହ୍ମା ଚିନ୍ତେ ଯାହାକୁ ।୫।



# କାଳିଆ କାହ୍ନୁ ଆଉ ବିଳମ୍ବ କର କାହିଁକି ?

## ଗୌରଚରଣ ଅଧିକାରୀ

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ
ପତିତ ତାରିବା ପାଇଁକି । ଘୋଷା ।

ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁକି
ଅନେକ କାଳର ଦୁଃଖ ଉପେକ୍ଷିବେ
କଳା ଶ୍ରୀମୁଖକୁ ଚାହିଁ କି ।୧ ।

ଆଗେ ଗଜପତି ଉଭା ହୋଇଛନ୍ତି
ଶିରେ ଯୋଡ଼ି କର ଦୁଇକି
ସୁନା ଶୋଧନୀରେ ମାର୍ଜ୍ଜନା କରନ୍ତି
ପହଣ୍ଡି ବିଜୟ ଭୂଇଁକି ।୨।

ଛତିଶା ନିଯୋଗ ଉଭା ହୋଇଛନ୍ତି
ଯେ ଭାଜନ ହେବେ ଯହିଁକି
ଆକାଶେ ଇନ୍ଦ୍ର ଅମରବୃନ୍ଦ ପୁଷ୍ପ
ବୃଷ୍ଟି କରୁଛନ୍ତି ତହିଁକି । ୩ ।

ତାଳଧ୍ୱଜ ରଥେ ବିଜୟେ କରନ୍ତୁ
କହିଦିଅ ବଡ଼ ଭାଇଙ୍କି
ଦେବୀରଥ ବଡ ସୁନ୍ଦର ଦିଶିବ
ଭଉଣୀ ହଳଦୀମୁହୀଙ୍କି । ୪ ।

ତୁମ୍ଭେ ପଛରେ   ପଛକେ ଆସୁଥାଅ
କରି ନବରଙ୍ଗ ଛଇକି
ମଥା ଦୋହଲାଇ   ଚାହିଁଆ ହଲାଇ
ଠାବେ ଠାବେ ରହି ରହିକି । ୫ ।

ସେବକମାନଙ୍କ   ଅଙ୍ଗ ଶ୍ରମ ଝାଳ
ଗମଗମ ପଡ଼େ ବହି କି
ଝଙ୍କାଝଙ୍କି କରି-   ବାରୁ ବାଧୁଥିବ
ପରା ସୁକୁମାର ଦେହିକି । ୬ ।

ଦେବଦାସୀ ନାଟ   ଉକୁଟ କରନ୍ତି
ତା ତା ଧିମ୍ରିକଟ ଥେଇକି
ବାଜେ ଖୋଳତାଳ   ମହୁରୀ ମଞ୍ଜୁଳ
ମର୍ଦ୍ଦଳ ତା ଧେଇ ଧେଇକି । ୭ ।

କା ନେତ୍ରୁ ଲୋତକ   ବହେ ଥକ ଥକ
କେହି ନାଚେ ଗୀତ ଗାଇକି
ଜଗମୋହନିଆ   ଜଗତ ଜନଙ୍କୁ
ଲଗାଇଛି ପ୍ରେମ ବାଇକି ।୮ ।

କେତେ ଖାଇବ   କଦଳୀ କରମଙ୍ଗା
ସରପୁଳୀ ଖଣ୍ଡ ଖଇକି
ନାଡ଼ି ବଡ଼ି ଗଜା   ମନୋହର ଖଜା
ଛେନାପୁର ବସା ଦହିକି ।୯ ।

କେ କେତେ ତମାଳୀ   ଗୀତ ଶୁଣାଇବେ
କେ କେତେ କରିବେ ଟାହିକି
ଖଣ୍ଡି ଚିରଦୁଃଖ   ମଣ୍ଡି ଦେବ ଆଜ
କ୍ଷେତ୍ର ବଡ଼ଦାଣ୍ଡ ସାହାକି ।୧୦ ।

ନ' ଦିନ ଅବଧି          ଲକ୍ଷ୍ମୀଙ୍କି ପ୍ରବୋଧି
ଆସଅଛ ପରା କହି କି
ତୁନି ହୋଇ ଆସ          ଚିହ୍ନି ଅଛଟି କି
ଜଳପତି ଜେମା ଦେଖି କି । ୧୧ ।

ଆହେ ଚକାଡ଼ୋଳା !          ବୃନ୍ଦାବନ ଲୀଳା
ମନେ ଆଉ ପଡ଼ୁ ନାହିଁ କି
ଅହେ ବଂଶୀ ଧରା !          ଚରାଇବ ପରା
ଜଗତ-ଭଗତ-ଗାଈଙ୍କି । ୧୨ ।

ପାପ-ଅନ୍ଧକାର          ଛାର କି କରିବ
ଆଉ ସେ ପାରିବ ଛୁଇଁ କି ?
ନୀଳଶଇଳ          ଶିଖରୀ ପୂର୍ଣ୍ଣଚନ୍ଦ୍ର
ଆସୁଛନ୍ତି ପରା ଉଇଁ କି ।୧୩।

ଅପଲକ ଦୃଷ୍ଟି          କରରେ ମାନସ !
ଆଉ ଏ ସମୟ ପାଇ କି ?
ଗଉର ଚରଣ          ପଶିଲା ଶରଣ
ନନ୍ଦିଘୋଷ ରଥ ଛାଇ କି । ୧୪ ।



# କଳାସିଂହ କାହିଁକି ଅଇଲୁରେ

ଗୌରଚରଣ ଅଧିକାରୀ

କଳାସିଂହ  କାହିଁକି ଅଇଲୁରେ ଶ୍ରୀ ନୀଳକନ୍ଦର ଛାଡ଼ି
ଭାଇ ଭଗ୍ନୀ ସଙ୍ଗେ ଘେନିକରି ରଙ୍ଗେ
ରହିଛୁ ଗୁଣ୍ଡିଚା ବାଡ଼ି । ଘୋଷା ।

ହଜାର ସୁଆର ରାନ୍ଧି ପରସିଲେ
ତେବେ ନ ପୁରଇ ପେଟ,
ଏଠାରେ ସପୁରୀ ପଣସ କଦଳୀ
ଖାଇ ହୋଇଯିବୁ ମୋଟ । ୧ ।

ଅରଗଳି ଗଳି ଯିବାକୁ ତେଣିକି
ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ
ଏବେ ନାନାଜାତି ଯୁବତୀ ଆସିଣ
ଲଦୁଛନ୍ତି ଖଡୁବାହି । ୨ ।

ଇନ୍ଦ୍ର, ଚନ୍ଦ୍ର ଦେବବୃନ୍ଦ ଆଜ୍ଞାକାରୀ
ବ୍ରହ୍ମା ପଢୁଥାନ୍ତି ବେଦ
ସେ ସୁଖ ନୋହିଲା ବୋଲି ଶୁଣୁଛୁ କି
ଢଗଢମାଳିଆ ପଦ । ୩ ।

ବଡ଼ ଦେଉଳରେ ବଡ଼ ଧଣ୍ଡାମାଳ
ବଡ଼ ରଙ୍ଗଧଡ଼ି ପିନ୍ଧା
ଏବେ ଭାଇ ଭଗ୍ନୀ ତିନିଜଣ ଯାକ
ଖୟରେ ହୋଇଛ ବନ୍ଧା । ୪ ।

୦

କର୍ପୁର ଚନ୍ଦନ ଚୂଆ ଚତୁଃସମ
ନ ରୁଚିଲା ସେ ସୁବାସ
ଏବେ ଶ୍ରୀଅଙ୍ଗରେ ଅଙ୍ଗୁଳି ବହଲେ
ଲାଗିଛି ହଳଦୀ କଷ । ୫ ।

ନାଡ଼ି ବଡ଼ି ଗଜା ଖଣ୍ଡଖଇ ଖଜା
ଏ ତୋତେ ନୋହିଲା ମିଠା
ମାଉସୀ ଦୁଆରେ ରହି ଚୋବାଇଲୁ
ପାଉଁସିଆ ପୋଡ଼ପିଠା ।୬ ।

ଘର ଘରଣୀକି ନ ଦିନକୁ ପରା
କରି ଆସିଅଛୁ କଣ୍ଟ
ସେ କଥା ପାସୋରି ମୂଳାଉଛୁ ଗାଳି
ତୁ ବଡ଼ ବିଷମ ଖଣ୍ଟ । ୭ ।

ହେରା ଦିନ ପରା ରଥ ଭାଙ୍ଗିଗଲେ
ଠାକୁରାଣୀ ହୋଇ କ୍ରୋଧ
ତେବେପୁଣି ତୋର ଚେତା ପଶୁନାହିଁ
ଯାଉଛୁ ଗହମ ନିଦ । ୮ ।

ଆନ ନାରୀ ପରି ନୁହନ୍ତି କମଳା
ସେ ଯେ ନ ସହନ୍ତି ଟାହି
ଘଡ଼ିଏ ଉଛୁର ହେଲେ ଘଉଡ଼ିବେ
ଘରେ ପୂରାଇବେ ନାହିଁ । ୯ ।

ସେ ମାନ କହିବୁ ଗୋକୁଳ ନାରୀଙ୍କୁ
ଠାରିବୁ ନୟନ କୋଣେ
ବଂଶୀ ବଜାଇବୁ ମନ ମଜାଇବୁ
ଖୋଜାଇବୁ କୁଞ୍ଜ ବଣେ । ୧୦ ।

ନିଷୟ ତୋହର ମନେ ପଡ଼ିଗଲା
ବୃନ୍ଦାବନେ ଗାଈ ରଖା
ଦ୍ୱାଦଶ ବନରେ ବିହାର କରିବୁ
ସଙ୍ଗେ ଘେନି ଗୋପ ସଖା । ୧୧ ।

ଐଶ୍ୱର୍ଯ୍ୟ ସମ୍ପତ୍ତି ନୀଳାଦ୍ରିରେ ସ୍ଥିତି
ବ୍ରଜେ ଏକା ପ୍ରେମ ଭାବ
ଜଣାଗଲା ତେବେ ଉଭୟ ପକ୍ଷରେ
ପ୍ରେମ ସେ ପରମ ଭାବ । ୧୨ ।

ଜଣାଅଛି ମୋତେ ପୂର୍ବରୁ ତୋହର
ସ୍ୱଭାବ ଗୋଟିଏ ଅଛି
ଠେକ ଲୋକ ଟେକି ଟିକିଏ ନରଖୁ
ଦୀନରେ ଦୟା ଶ୍ରୀବତ୍ସି । ୧୩ ।

ହରଙ୍କୁ ମୋହିନୀ ରୂପେ ଭୁଲାଇଲୁ
ବ୍ରହ୍ମାଙ୍କୁ ବତ୍ସାହରଣେ
ସୁନାଶୀର ଗର୍ବ ଚୂନା କରି ଦେଲୁ
ଗୋ ମତ ଗିରି ଧାରଣେ । ୧୪ ।

ଦନ୍ତକ୍ଷତ ଚୂତ ଶବରଣୀ ଦେଲା
ଖାଇଲୁ ତାର ଅଇଣ୍ଠା
ଶୋଇଲା ଶେଯରେ ଶ୍ରୀବତ୍ସ ବ୍ରାହ୍ମଣ
ମାଇଲା ପରା ଗୋଇଠା ।୧୫ ।

ଭଲ ଭଲ ଲୋକେ ଦେଉଳକୁ ଗଲେ
ପଣ୍ଡା ମାରନ୍ତି ଘଉଡ଼ି
ଏବେ ନୀଚ ଲୋକେ ଦରଶନ କରି
ଝିଙ୍କନ୍ତି ରଥ ଦଉଡ଼ି । ୧୬ ।

ନୋହିଲେ କାହିଁକି ଭକତବତ୍ସଳ
ନାମ ଦୀନଜନବନ୍ଧୁ
ପତିତମାନଙ୍କୁ ଦରଶନ ଦେଇ
ଉଦ୍ଧରିଲୁ ଭବ ସିନ୍ଧୁ । ୧୭ ।

ନାନା ନଟକୂଟ ନବରଙ୍ଗ ଜାଣୁ
ଛଇଳ ନାଗର ହରି
ଇତର ଲୋକଙ୍କ ମହତ ସମ୍ଭାଳୁ
ଆପଣା ମହତ ସାରି । ୧୮ ।

ବଡ଼ ଲୋକ ପୁଅ ବୋଲି ସିନା ତୋତେ
କେହି ନ ବୋଲନ୍ତି କିଛି
ଭଉଣୀକି ଘେନି ଦାଣ୍ଡେ ବୁଲିବାର
କାହାଘରେ ଦେଖା ଅଛି । ୧୯ ।

ଗଉରଚରଣ ବୋଲେ ପ୍ରଭୁପଣ
ଜଣାଗଲା ଏବେ ଆସ
ପତିତପାବନ ପତାକା ଉଡ଼ାଇ
ରତ୍ନ ସିଂହାସନେ ବସ । ୨୦ ।



# ସଖି ! ନବଘନ

## ଗୌରଚରଣ ଅଧିକାରୀ

(ରାସଗୀତ-ବୃତ୍ତ)

ସଖି ! ନବଘନ                    କାଳିଆବଦନ
କି ଶୋଭା ଦିଶୁଛି ଅନା ଗୋ
ଏହି ପରା ବୃନ୍ଦା-                ବନ ଧେନୁ ଚରା
ନନ୍ଦର ନନ୍ଦନ କାହ୍ନା ଗୋ
ଭଲେ କର ଅନୁମାନ
ସେହି କୁଳବୁଡ଼ା ଏ ନିଦାନ ଗୋ । ୧ ।

ବାକଟକୁଟିଆ                    ବସନଲୁଟିଆ
ଖୋଟିଆ ପଣତ ଜାଣ ଗୋ
ଗୋଟି ଗୋଟି କରି                ଗୋପକନିଆଁଙ୍କୁ
ଯେତେ କରେ ହଇରାଣ ଗୋ
ଏକୁଟିଆ ହୋଇ ଠିଆ
ବାଟେ ଘାଟେ ଭାଙ୍ଗଇ ମାଠିଆ ଗୋ । ୨ ।

କହିଲେ ହୋଇବ                  ପୋଥିଟାର ପାଠ
ତା ଯେଉଁ ଅପାଠଯାକ ଗୋ
ଦହି ଦୁଧ ଯେତେ                 ଚୋରାଇ ଗିଳଇ
ସଭିଙ୍କି କରି ଅବାକ ଗୋ
ପୁଣି ପୁଣି ବଂଶୀ ଫୁଙ୍କି
ବାଇ ଭୂତ ଲଗାଏ ଗୋପୀଙ୍କି ଗୋ । ୩ ।

ଏତେ ଗୁଣ ଜାଣି ପଣତକାନିରେ
ଗୋଇ ବାନ୍ଧିଥିଲେ ବୋଲି ଗୋ
କନ୍ଦର କରିଣ ପଳାଇ ଆସି ତ
ଏଠାରେ ବଖାଣେ ବୋଲି ଗୋ
ରଜା ପରି ଖଜା ଖାଇ
ମଜା ମାରୁଛି ଦେଖାଇ ଛଇ ଗୋ । ୪ ।

ଆମ ଠାକୁରାଣୀ କୁଞ୍ଜସାମନ୍ତାଣୀ-
ଙ୍କର ଏ ପରା ବେଠିଆ ଗୋ
ଭେଟ ଲମ୍ପଟରେ ନୀପ ନିକଟରେ
ହୋଏ ଯମୁନା ତୁଠିଆ ଗୋ
ଏବେ ରତ୍ନ ସିଂହାସନେ
ବସି ରହିଛି ମହା ମଉନେ ଗୋ । ୫ ।

ପୂରୁବ କଥା କି ମନେ ଭାବି ତାର
ଦୂରୁ ପକାଉଛି ହସି ଗୋ
ଦୂରୁଜନ କାହ୍ନା ମୁରୁକିହସାରେ
ଏତେ ଲୋକଛନ୍ତି ରସି ଗୋ
ଧନ୍ୟ ଧନ୍ୟ ଏ କାଳିଆ
ଗୌର ଦ୍ୱିଜର ଗଳାମାଳିଆ ଗୋ ।୬ ।



# ଆହେ ପ୍ରଭୁ ଜଗନ୍ନାଥ ! ବାରେ ଫେଡ଼ ମୋ ଆରତ

## ରଘୁନାଥ ଦ୍ୱିଜ

(ରାଗ-ଖରହରପ୍ରିୟା)

ଆହେ ପ୍ରଭୁ ଜଗନ୍ନାଥ !
ବାରେ ଫେଡ଼ ମୋ ଆରତ
ଦୁଃଖ ଦେଖି ମହାପ୍ରଭୁ ! କର୍ଣ୍ଣେ ଦେଇଛ କି ହସ୍ତ । ଘୋଷା ।
ଗଜ ଡାକିଲା ଜଳରେ ତାହା ଶୁଣିଲ କର୍ଣ୍ଣରେ
ଚକ୍ରକୁ ପେଶିଲ ଖରେ ଗ୍ରାହ ପ୍ରାଣ କଲ ହତ । ୧ ।

କୁରୁପତି ସଭାତଳେ ଦ୍ରୌପଦୀ ଆତଙ୍କ କାଳେ
କୋଟି ବସ୍ତ୍ର ଦେଇ ହେଳେ ରଖିଲ ତାର ମହତ । ୨ ।

ଆହୁରି କଥାଏ ପୁଣି ଆତଙ୍କେ ଡାକେ ମୃଗୁଣୀ
ବ୍ୟାଧକୁ ଜୀବନେ ହାଣି ଫେଡ଼ିଲ ତାର ଆରତ । ୩ ।

ଅତିକଷ୍ଟେ ଡାକେ ହରି ! ଦୁଃଖ ନ ଗଲା ମୋହରି
ବାରେ ଫେଡ଼ ମୋ ଗୁହାରୀ କହେ ଦ୍ୱିଜ ରଘୁନାଥ । ୪ ।



## ନୀଳମଣି ହେ ନୀଳକନ୍ଦର ହରି !

ନୀଳମଣି ହେ ନୀଳକନ୍ଦର ହରି ।
ନୀଳଚକ୍ର ଯେତେ
ଦୂର ଦିଶିଯାଏ
ସେ ଯାଏ ଶମନ ନ ପଶେ ଡରି । ।ଘୋଷା ।

ଢାଳି ଚକାଡ଼ୋଳା
ଦୀନ ଦୁଃଖ ଭୋଳା
ସକଳ ଆରତ ଦେଉଛ ଟାଳି
ଟେକି ବାହୁତଳେ
ଘଣ୍ଟ ଘୋଡ଼ାଇଲ
ଇତର ପତିତ ଦାଣ୍ଡ ଭିକାରୀ । ୧ ।

ଲୀଳାମୟ ଭଲା
ଲଗାଇଲ ଲୀଳା
ଜାତି ଅଜାତିରେ ନୁହଁଇ ବାରି,
କୈବଲ୍ୟ କଣିକା
ମୁଖେ ଟୋଳି ଦେଇ
ଭେଦାଭେଦ ଭାବ ନାହିଁ କାହାରି । ୨ ।

ସକଳ ତୀର୍ଥ ଯେ
ଏକାଠାବେ ଠୁଳ
ଶ୍ରୀଧାମ ବୋଲାଏ ଅମର ପୁରି
ମଙ୍ଗଳ ଆଳତୀ
ଦେଖିବାକୁ ନୀତି

ଦେଉଳେ ଦେବଙ୍କ ପଡ଼େ ଗହଳି । ୩ ।
ନୀଳାଚଳ ଚୂଳେ
ଶ୍ରୀମନ୍ଦିର କୋଳେ
ରତ୍ନ ସିଂହାସନେ ବିଜେ ଶ୍ରୀହରି,
ଚାହିଁ ଦେଲେ ଥରେ
ଆନ ଜନ୍ମ ସରେ
କୋଟି ଜନ୍ମ ପାପ ଯାଏ ପଖାଳି । ୪

ବଡ଼ଦାଣ୍ଡ ଧୂଳି
ମୁଣ୍ଡେ ଦେଲେ ବୋଳି
ଖଣ୍ଡିଯାଏ ଯେତେ ପାତକ କାଳୀ ।
ଯୁଗଯୁଗଧରି
ଶ୍ରୀଚରଣ ଧରି
ଖଣ୍ଡଖଳକେତେ ଗଲେଣି ତରି ।୫ ।



(ପ୍ରାଚୀନ ରଚନାରୁ, ବାଣୀକଣ୍ଠ ନିମାଇ ଚରଣ ହରିଚନ୍ଦନଙ୍କ
କଣ୍ଠରେ ପରିବେଷିତ ଗ୍ରାମ୍‌ଫୋନ ରେକର୍ଡ଼ରୁ ସଂଗୃହୀତ)

# କବିମାନଙ୍କ ସଂପର୍କରେ ସୂଚନା...

## ୧– ଅଚ୍ୟୁତାନନ୍ଦ ଦାସ

ପୂର୍ବତନ କଟକ ଜିଲ୍ଲା ଅନ୍ତର୍ଗତ ତିଳକଣା ଗ୍ରାମରେ ଖ୍ରୀ ୧୩.୨.୧୪୮୯ ମାଘଶୁକ୍ଳ ଏକାଦଶୀ, କୁମ୍ଭ ସଂକ୍ରାନ୍ତିରେ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ କବି ଅଚ୍ୟୁତାନନ୍ଦ ଦାସଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଦୀନବନ୍ଧୁ ଖୁଣ୍ଟିଆ ଓ ମାତାଙ୍କ ନାମ ପଦ୍ମାବତୀ । ବହୁ ଗୀତା, ସଂହିତା, ଚରିତ, ବଂଶାନୁଚରିତ, ମାଳିକା, ଜଣାଣ, ଭଜନ ଓ ଷଡ଼ପଦୀ-ଗୀତର ସେ ରଚୟିତା । ଓଡ଼ିଶାରେ ରାହାସର ପ୍ରତିଷ୍ଠାତା ତଥା ପ୍ରଚାରକ । ଜ୍ଞାନ ଓ ନିରାକାର ଉପାସନା ତାଙ୍କର ମୁଖ୍ୟ ଦର୍ଶନ । ରାଜଜେମା ଚମ୍ପାବତୀଙ୍କୁ ସେ ବିବାହ କରିଥିଲେ । ତାଙ୍କର ଏକମାତ୍ର ପୁତ୍ର ଧ୍ରୁବ ବା ଗଦାଧର ବି ତାଙ୍କ ମାର୍ଗର ଜଣେ ସିଦ୍ଧ-ସାଧକ ଥିଲେ । ୧୬୦୯ ଖ୍ରୀଷ୍ଟାବ୍ଦ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀରେ ସେ ସମାଧି ଗ୍ରହଣ କରିଥିଲେ । ଚିତ୍ରୋତ୍ପଳା ନଦୀ ତୀରରେ ନେମ୍ବାଳ ତାଙ୍କର ସାଧନା କ୍ଷେତ୍ର ଓ ସମାଧି ସ୍ଥଳ । ଏଣୁ ଏବେବି ତାଙ୍କ ନିର୍ଦ୍ଦେଶ ଅନୁସାରେ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ନେମ୍ବାଳରେ ସମାଧି ଉତ୍ସବ ପାଳନ କରାଯାଏ ।

## ୨– ଅନନ୍ତ ଦାସ (ଶିଶୁ) (ଷୋଡ଼ଶ ଶତାବ୍ଦୀ)

"ପଞ୍ଚସଖା'ଙ୍କ ମଧ୍ୟରୁ ଅନ୍ୟତମ, ପୂର୍ବତନ ପୁରୀ ଜିଲ୍ଲା ଓ ବର୍ତ୍ତମାନ ଧୋରଧା ଜିଲ୍ଲା ବାଲିପାଟଣାରେ ତାଙ୍କର ଗାଦୀ ଓ ଏହା ତାଙ୍କର ଜନ୍ମସ୍ଥାନ ବୋଲି ଅନୁମିତ । ସେ ଶିଶୁ ସଂପ୍ରଦାୟର ପ୍ରତିଷ୍ଠାତା । ତାଙ୍କ ପିତାଙ୍କ ନାମ କପିଳ ଓ ମାତାଙ୍କ ନାମ ଗୌରୀ । "ହେତୁ ଉଦୟ ଭାଗବତ" ତାଙ୍କର ବିଶିଷ୍ଟ ରଚନା । ଏଥିରେ ଜଗନ୍ନାଥଙ୍କ ବୁଦ୍ଧତ୍ୱ, ଶରୀରରେ ଜଗନ୍ନାଥଙ୍କ ଅବସ୍ଥିତି, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, କାୟା ସାଧନା ତଥା ଜୀବାତ୍ମା ପରମାତ୍ମା ପ୍ରସଙ୍ଗ ରହିଛି । ଏହା ସହିତ ସେ ଅନେକ କ୍ଷୁଦ୍ର ପୁସ୍ତକ ରଚନା କରିଥିବାର ଜଣାଯାଏ ।

## ୩– ଅଭିମନ୍ୟୁ ସାମନ୍ତସିଂହାର

ଯାଜପୁର ଜିଲ୍ଲା ଅନ୍ତର୍ଗତ ଗୋଳକୁଣ୍ଡ ଗ୍ରାମରେ ଖ୍ରୀ: ୨୩-୨-୧୭୫୭ରେ କବିଙ୍କ ଜନ୍ମ । ତାଙ୍କର ଜମିଦାରୀ ଥିଲା ବାଲିଆ । ପିତା ଇନ୍ଦ୍ରଜିତ ସାମନ୍ତସିଂହାର ଓ

ମାତା ତୁଳସୀ ଦେବୀ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ହେଉଛନ୍ତି ତାଙ୍କର ଶିକ୍ଷା ଓ ଦୀକ୍ଷାଗୁରୁ । ବେଦ-ବେଦାନ୍ତ, ପୁରାଣ ଦର୍ଶନାଦି ଅଧ୍ୟୟନ ସହିତ ଗୌଡ଼ୀୟ ବୈଷ୍ଣବଦର୍ଶନର ଶାସ୍ତ୍ରାକାର ରୂପଗୋସ୍ୱାମୀଙ୍କର ସେ ଗ୍ରନ୍ଥମାନ ଅଧ୍ୟୟନ କରିଥିଲେ । ଅଭିମନ୍ୟୁ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ବିଦଗ୍ଧଚିନ୍ତାମଣି, ପ୍ରେମଚିନ୍ତାମଣି, ସୁଲକ୍ଷଣା, ପ୍ରେମକଳା, ରସବତୀ ସମେତ ବହୁ କାବ୍ୟ-କବିତା, ଜଣାଣ ଚଉତିଶା ସେ ରଚନା କରିଛନ୍ତି । ଖ୍ରୀ:୬-୮-୧୮୦୬ ରେ ସେ ସ୍ୱର୍ଗାରୋହଣ କଲେ ।

## ୪- ଆର୍ତ୍ତଦାସ (ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ)

କବି ଆର୍ତ୍ତ ଦାସ ନୟାଗଡ଼ ଅନ୍ତର୍ଗତ ଗଡ଼ ଗୁଆଡିରା ଗ୍ରାମରେ ଜନ୍ମଲାଭ କରିଥିଲେ । ଏବେ ବି ଏଠାରେ ଆର୍ତ୍ତଦାଧଙ୍କ ଡିହର ସ୍ମୃତି ଲୋକମାନଙ୍କ ମଧ୍ୟରେ ରହିଛି । ସେ ଜଣେ ବାକ୍‌ସିଦ୍ଧ ଯୋଗୀ ଓ ସାଧୁ ପୁରୁଷ ତଥା ନିରଞ୍ଜନ ବିଶ୍ୱାସୀ ଭକ୍ତ । ଖୋର୍ଦ୍ଧା ନିକଟବର୍ତ୍ତି ବେନୁପଡ଼ା ମଠରେ ସେ ଅବସ୍ଥାନ କରିବା ସହିତ ଓଡ଼ିଶାର ବିଭିନ୍ନ ସ୍ଥାନରେ ୭୫୨ଟି ଗାଦି ପ୍ରତିଷ୍ଠା କରିଥିଲେ । ସେ ରଚନା କରିଥିବା ଭଜନ, ଜଣାଣ ବେଶ ଆଦରଲାଭ କରିଆସିଛି ।

## ୫- ଉପେନ୍ଦ୍ର ଭଞ୍ଜ

ଓଡ଼ିଆ ସାହିତ୍ୟର ରୀତିଯୁଗର ପ୍ରସିଦ୍ଧ କବି ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜ୍ୟର କୁଲାଡ଼ ଉଆସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମହ ଘୁମୁସର ରାଜା ଧନଞ୍ଜୟ ଭଞ୍ଜ ବି ଜଣେ ବଶିଷ୍ଟ କବିଥିଲେ । ପାରିବାରିକ କନ୍ଦଳ ଯୋଗୁଁ ଘନଭଞ୍ଜ ଘୁମୁସର ସିଂହାସନ ଅଧିକାର କରିବାରୁ, ଉପେନ୍ଦ୍ରଭଞ୍ଜ ନୟାଗଡ଼ ରାଜ୍ୟରେ ଆଶ୍ରୟ ଗ୍ରହଣ କରି "ରାମତାରକ ମନ୍ତ୍ର" ପ୍ରସାଦରୁ "ବୈଦେହୀଶ ବିଳାସ", "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ", "ପ୍ରେମସୁଧାନିଧି", "ଲାବଣ୍ୟବତୀ" ଆଦି ବହୁପୁସ୍ତକ ତଥା ବହୁ ସଂଖ୍ୟକ ଭଜନ, ଚଉପଦୀ, ବୋଲି, ପୋଇ ଆଦି ରଚନା କରିଥିଲେ । ତାଙ୍କ ସମୟ ୧୬୭୭ରୁ ୧୭୨୫ ଖ୍ରୀଷ୍ଟାବ୍ଦ । ଉପେନ୍ଦ୍ର ଭଞ୍ଜଙ୍କ ବ୍ୟାପକ ରଚନାକୁ ୫ଟି ଭାଗରେ ଆଲୋଚକମାନେ ଭାଗ କରିଛନ୍ତି -(କ) ଗୀତିକା(ଖ) ପୌରାଣିକ କାବ୍ୟ,(ଗ)କାଳ୍ପନିକ କାବ୍ୟ(ଘ)ଅଳଂକାର କାବ୍ୟ ଓ (ଙ) ବିବିଧ ରଚନା ।

## ୬- କବି କଳ୍ପଲତା ଜେମା (ଅଷ୍ଟାଦଶ ଶତାବ୍ଦୀ)

କବି କଳ୍ପଲତା ଜେମା ଖୁରୁଧା ନିକଟସ୍ଥ ହଳଦିଆ ରାଜପରିବାରର କନ୍ୟା । ଜଗନ୍ନାଥ ପ୍ରେମରେ ସାରାଜୀବନ କଟାଇଥିଲେ । ଜଗନ୍ନାଥଙ୍କ ଦର୍ଶନ ଲାଳସାରେ

ତନ୍ମୟ ହୋଇ ସର୍ବତ୍ର ସେ ମହାପ୍ରଭୁ ଓ ତାଙ୍କ ଲୀଳା ଦର୍ଶନ କରିବାର ମାନସିକତା ଉପଲବ୍ଧି କରୁଥିଲେ ।

### ୭- ଗୋପାଳ କୃଷ୍ଣ

ଜନ୍ମ-୧।୭।୧୭୮୪ ଆଷାଢ଼ ଶୁକ୍ଳ ପ୍ରତିପଦା ସ୍ୱର୍ଗାରୋହଣ- ୩।୬।୧୮୬୨। ଫାଲଗୁନ ଶୁକ୍ଳ ଦ୍ୱିତୀୟା । କବି ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ଜନ୍ମସ୍ଥାନ ପାରଳାଖେମୁଣ୍ଡି । ପିତା ବନବାସୀ ପଟ୍ଟନାୟକ ଓ ମାତା ଲଳିତା ଦେବୀ । ଆଶୁକବିତା ରଚନା କ୍ରମରେ ବାଲ୍ୟକାଳରୁ ତାଙ୍କର କବିଶକ୍ତିର ପରିଚୟ ମିଳିଥିଲା । କବି ବୈଷ୍ଣବଧର୍ମାବଲମ୍ବୀ । ରାଧାକୃଷ୍ଣଙ୍କ ଲୀଳା ତାଙ୍କ ସଂଗୀତର ପ୍ରଧାନ ଅଙ୍ଗ । ତାଙ୍କର ବହୁ ଜଣାଣ ଓ ଭଜନ ଶ୍ରୀଜଗନ୍ନାଥଙ୍କ ଅନୁଭୂତିକୁ ନେଇ ସୃଷ୍ଟି । ଗୋଟିପୁଅ ନାଚ, ପାଲା, ଦାସକାଠିଆ ଓ ଅଖଣ୍ଡ ଓଡ଼ିଶାର ଗ୍ରାମାଞ୍ଚଳର ଜନସାଧରଣଙ୍କ ମଧ୍ୟରେ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀ ବହୁପରିଚିତ ।

### ୮- ଗୋବିନ୍ଦ ଭଞ୍ଜ (ଅଷ୍ଟାଦଶ ଶତାବ୍ଦୀ)

ଗୋବିନ୍ଦ ଭଞ୍ଜ କେନ୍ଦୁଝର ରାଜବଂଶର ଅନ୍ୟତମ ସନ୍ତାନ । ରାଜା ଶିବନାରାୟଣଙ୍କ ପିତାମହ ଥିଲେ । ବଳଭଦ୍ର ଭଞ୍ଜଙ୍କ ସମସାମୟିକ । ସେ "କୃଷ୍ଣଭକ୍ତି ରସାମୃତ", "ବଉଳା ଚରିତ", "ଭକ୍ତିବିନୋଦ", "ଚରଣ ସୁଧାନିଧି" ଓ "ରାମଗୀତା" ନାମରେ ଗ୍ରନ୍ଥ ରଚନା କରିଥିଲେ ।

### ୯- ଗୌର ଚରଣ ଅଧିକାରୀ (୧୮୧୪-୧୮୯୦)

ଗୌରଚରଣ ଭାଦ୍ରବ ମାସ ରାଧାଷ୍ଟମୀ ଦିନ ଖୋର୍ଦ୍ଧ ଅନ୍ତର୍ଗତ ଲେହଙ୍ଗ ଗ୍ରାମରେ ଜନ୍ମ । କବି ଗୌଡ଼ୀୟ ବୈଷ୍ଣବାବଲମ୍ବୀ । ରାଧାକୃଷ୍ଣ ଲୀଳା ଓ ଜଗନ୍ନାଥଙ୍କ ଯାତ୍ରା ଆଦି ବର୍ଣ୍ଣନାଭିତ୍ତିକ କବିତା ସେ ରଚନା କରିଥିଲେ । କବି ଓଡ଼ିଆ, ବଙ୍ଗଳା ଓ ବ୍ରଜବୋଲି ଭାଷାରେ ସଂକୀର୍ତ୍ତନ ରଚନା କରି ବେଶ୍ ଲୋକପ୍ରିୟ ଥିଲେ । ତାଙ୍କର ରଚନାବଳୀ ଗୌରଚରଣ ଗୀତାବଳୀ, ଗୌରକୃଷ୍ଣ ଭଜନଶତକ ଆଦି ଶୀର୍ଷକରେ ପ୍ରକାଶିତ । ଗୌରଚରଣ ଶୁଦ୍ଧାଭକ୍ତି ମାର୍ଗର ପଥିକ ଓ ଉପାସକ । ୧୮୯୦ ମାର୍ଗଶିର କୃଷ୍ଣ ଏକାଦଶୀରେ ତାଙ୍କର ସ୍ୱର୍ଗାରୋହଣ ।

**୧୦- ଚଣ୍ଡୀ ଦାସ (ଅଷ୍ଟାଦଶ ଶତାବ୍ଦୀ)**

କେତେକ ଜନପ୍ରିୟ ଭକ୍ତି ଗୀତର କବି । ତାଙ୍କ ପରିଚୟ ସଂପର୍କରେ ବିଶେଷ କିଛି ଜଣାଯାଏ ନାହିଁ । କେବଳ କେତେକ ତାଳପତ୍ର ପୋଥି ଓ ଲୋକମୁଖରେ ତାଙ୍କ ଗୀତିକାର ଯାହା ପରିଚୟ ରହିଛି । ସେ ଥିଲେ କୃଷ୍ଣଭକ୍ତ ଓ ଶ୍ରୀଜଗନ୍ନାଥଙ୍କୁ ସେ କୃଷ୍ଣରୂପରେ ଦେଖିଛନ୍ତି ।

**୧୧- ଚନ୍ଦନ ହଜୁରୀ (ଚାଖି ଖୁଣ୍ଟିଆ)**

ଜନ୍ମ ୩୦ ।୧୦ ।୧୮୨୭କାର୍ତ୍ତିକ ଶୁକ୍ଳଏକାଦଶୀ, ମଙ୍ଗଳବାର । ମୃତ୍ୟୁ- ୩୦ ।୧୦ ।୧୮୮୮ । ଚନ୍ଦନ ହଜୁରୀ, ପୁରୀ ହରଚଣ୍ଡୀ ସାହିର ଭୀମସେନ ହଜୁରୀଙ୍କ ପୁତ୍ର । ଶୁଣାଯାଏ ଚନ୍ଦନ ହଜୁରୀଙ୍କ ସହିତ ଝନ୍‌ସୀରାଣୀ ଲକ୍ଷ୍ମୀବାଈଙ୍କର ଯଜମାନୀ ସଂପର୍କ ଥିଲା । ସାହସୀ ଓ ବୀର ଚନ୍ଦନ ହଜୁରୀ ପୁରୀ ପଣ୍ଡା ବେଶ ଧରି ଝାନ୍‌ସୀରାଣୀ ଲକ୍ଷ୍ମୀବାଈଙ୍କ ବିଦ୍ରୋହ ବାର୍ତ୍ତା ପ୍ରଚାର କରୁଥିଲେ । ସିପାହୀ ବିଦ୍ରୋହରେ ସେ ବନ୍ଦୀ ହେଲେ । ବନ୍ଦୀରୁ ମୁକ୍ତ ହୋଇ ଶେଷ ଜୀବନ ପୁରୀରେ କଟାଇଥିଲେ । ପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ମିଳୁଥିବା ତାଙ୍କର ଏକମାତ୍ର ଭଜନରେ ହଜୁରୀଙ୍କର ଯେଉଁ ଶବ୍ଦ ସଂଯୋଜନା ଓ ପୋଖତ ଗୀତ ରଚନାର ପରିଚୟ ମିଳୁଛି, ସେଥିରୁ ତାଙ୍କର ଆହୁରି ଅନେକ ଲେଖା ଥିବା ଅନୁମାନ କରାଯାଏ ।

**୧୨- ଜଗନ୍ନାଥ ଦାସ**

ଜନ୍ମ- ୧୪୮୭ ଖ୍ରୀଷ୍ଟାବ୍ଦ, ଭାଦ୍ରବ ରାଧାଷ୍ଟମୀ ବୁଧବାର- ତିରୋଭାବ- ୧୫୫୦ ଖ୍ରୀ. ମାଘ ଶୁକ୍ଳ ସପ୍ତମୀ । ପୁରୀ ନକିଟସ୍ଥ କପିଳେଶ୍ୱରପୁରରେ ପୁରାଣ ପଣ୍ଡା ଭଗବାନ ଦାସ ଓ ପଦ୍ମାବତୀଙ୍କ କ୍ରୋଡ଼ ମଣ୍ଡନ କରି ଜନ୍ମଗ୍ରହଣ କରିଥିଲେ । ସେ ଗଜପତି ପ୍ରତାପରୁଦ୍ରଙ୍କର ପ୍ରିୟପାତ୍ରଥିଲେ । ଶ୍ରୀଚୈତନ୍ୟ ତାଙ୍କ ମୁଖରୁ ଭାଗବତର ଅନୁବାଦ ଶୁଣି ତାଙ୍କୁ "ଅତିବଡ଼ୀ" ଉପାଧିରେ ଭୂଷିତ କରିଥିଲେ । କବି ଜଗନ୍ନାଥ ଦାସ ଉଭୟ ସଂସ୍କୃତ ଓ ଓଡ଼ିଆରେ ବହୁପୁସ୍ତକ,ଭଜନ ଓ ଚଉପଦୀ ରଚନା କରିଛନ୍ତି । ତାଙ୍କ ଭାଗବତର ଭାଷା ଓଡ଼ିଆଜାତିର ମୁଖର ଭାଷାରେ ପରିଣତ ହୋଇଛି ।

**୧୩- ଦୀନକୃଷ୍ଣ ଦାସ (ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ)**

ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ନାମରେ ଅନେକ କବି ଥିଲେ । "ରସକଲ୍ଲୋଳ"ର କବି କୃଷ୍ଣଦାସ ବୈଷ୍ଣବ ଜନୋଚିତ ନମ୍ରତା ହେତୁ ନିଜନାମ ଆଗରେ "ଦୀନ"

ପଦଟି ବ୍ୟବହାର କରିଥିବାରୁ ଲୋକେ କାଳକ୍ରମେ ତାଙ୍କୁ ଦୀନକୃଷ୍ଣ ବୋଲି ଚିହ୍ନିଲେ । କବି ରୋଗାକ୍ରାନ୍ତ ଥିବାରୁ ପ୍ରତ୍ୟେହ ନିଜ ଇଷ୍ଟ ଜଗନ୍ନାଥଙ୍କ ଗରୁଡ଼ସ୍ତମ୍ଭ ନିକଟରେ ସ୍ୱରଚିତ ଆରତତ୍ରାଣ ଚଉତିଶା ଆବେଗଭରା କଣ୍ଠରେ ଗାନକରି ରୋଗମୁକ୍ତ ହୋଇଥିବାର ଶୁଣାଯାଏ । କବି ବଡ଼ ସ୍ୱାଭିମାନୀ ଥିଲେ । ଦୀନକୃଷ୍ଣ ଗଜପତିଙ୍କ ନାମରେ ଗୀତରଚନା କରିବାକୁ ଅସ୍ୱୀକାର କରି ରାଜରୋଷର ଶରବ୍ୟ ହୋଇଥିଲେ ।

## ୧୪- ଦୀନବନ୍ଧୁ ରାଜ ହରିଚନ୍ଦନ

ସୁରଙ୍ଗୀର ରାଜା ଦୀନବନ୍ଧୁ ରାଜ ହରିଚନ୍ଦନ ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀ ଶେଷାର୍ଦ୍ଧର ଅନ୍ୟତମ ରାଜକବି ରୂପେ ସୁପରିଚିତ । ରାଧାକୃଷ୍ଣଙ୍କ ଲୀଳା ରଚନାରେ ସେ ଜଣେ ଥିଲେ ସୁଦକ୍ଷ ବିନ୍ଧାଣି । ତାଙ୍କ ରଚିତ "ରାଧାକୃଷ୍ଣ ଲୀଳାମୃତ ସାଗର" ଓଡ଼ିଆ କୃଷ୍ଣକାବ୍ୟର ଏକ ପ୍ରସିଦ୍ଧ ଭକ୍ତି କାବ୍ୟ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଏହାଙ୍କୁ ଉପେନ୍ଦ୍ର, ଦୀନକୃଷ୍ଣ, ଭୂପତି ଓ ଲୋକନାଥ ବିଦ୍ୟାଧର ପ୍ରଭୃତି କବିଙ୍କ ଅପେକ୍ଷା ଉତ୍କୃଷ୍ଟ କବି "ସୁକବି" ବୋଲି ତାଙ୍କ "ଯୁଗଳ ରସାମୃତ ଭଉଁରୀ" ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ତାଙ୍କର ଅନେକ ରଚନା ପ୍ରାଚୀ ସମିତି ଓ ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ଦ୍ୱାରା ସଂଗୃହୀତ । ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ "ଗୀତିକାବ୍ୟ ସଂଚୟନ"ରେ ୫୨ଟି ଚଉପଦୀ ସ୍ଥାନିତ ।

## ୧୫- ଦୁଃଖୀଶ୍ୟାମ ଦାସ (୧୮ଶ ଶତାବ୍ଦୀ)

କବି ଦୁଃଖୀଶ୍ୟାମ ପଦାବଳୀର କବି ରୂପେ ପୁରପଲ୍ଲୀରେ ପରିଚିତ । କେତେକ ଚଉପଦୀ ଓ ଭକ୍ତିଗୀତ ହେଉଛି ଏହାଙ୍କର ସୃଷ୍ଟି । ଏହାଛଡ଼ା କବି "ମଧୁମଙ୍ଗଳ" ନାମକ ଏକ କାବ୍ୟ ରଚନା କରିଥିଲେ ବୋଲି କବି ବିଚ୍ଛନ୍ଦଚରଣ ପଟ୍ଟନାୟକ ଉଲ୍ଲେଖ କରିଛନ୍ତି ।

## ୧୬- ଦିବ୍ୟସିଂହ ଦେବ (ଊନବିଂଶ ଶତାବ୍ଦୀ)

ଗଜପତି ଦିବ୍ୟସିଂହ ଦେବ । ଖୋରଧା ଭୋଇବଂଶର ତୃତୀୟ ଦିବ୍ୟସିଂହ ଦେବ ରାଜା ରୂପେ ସେ ପରିଚିତ । ବ୍ରିଟିଶ ସରକାରଙ୍କ ଚକ୍ରାନ୍ତରେ ପ୍ରଥମେ କଟକରେ, ପରେ ମେଦିନୀପୁରରେ ଓ ଶେଷରେ ତାଙ୍କୁ କଳାପାଣି ପଠାଇ ଦିଆଯାଇଥିଲା । ଏହି ନିର୍ଯାତନା ବେଳର ମର୍ମବେଦନା ତାଙ୍କ ରଚନାରେ ପ୍ରତିଫଳିତ ।

## ୧୭- ନିତ୍ୟାନନ୍ଦ ଦାସ

କବି ନିତ୍ୟାନନ୍ଦ ଅଷ୍ଟାଦଶ ଶତାବ୍ଦୀର କବି । ଜଗନ୍ନାଥ-ସର୍ବସ୍ୱ ଚେତନା ହିଁ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଅନୁଚିନ୍ତା । ବାଣୀକଣ୍ଠ ନିମାଇଁଚରଣ ହରିଚନ୍ଦନଙ୍କ ଯାଦୁକରୀ କଣ୍ଠରେ ପରିବେଶିତ ହୋଇ ଏହା ଓଡ଼ିଶାରେ ବେଶ ଜନପ୍ରିୟ ହୋଇପାରିଥିଲା । "ଆରତ ଧ୍ୱଂସନ' ତାଙ୍କର ବହୁପରିଚିତ ରଚନା ।

## ୧୮- ବନମାଳୀ ଦାସ

କବି ବନମାଳୀ ଦାସ ପୁରୀ ଦୋଳମଣ୍ଡପ ସାହୀର କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିତାଙ୍କ ନାମ ହରି ଓ ଗୁରୁଙ୍କ ନାମ ଲକ୍ଷ୍ମଣ ତଳିଛୋ । ସେ ଖୋରଧା ରାଜା ବୀରକେଶରୀ ଦେବ(ଖ୍ରୀ. ୧୭୩୭-୯୨)ଙ୍କ ସମସାମୟିକ ଥିଲେ । ବୀରକିଶୋରଙ୍କ ନାମରେ କେତେ କବିତା ଭଣିତା କରିବା ପରେ ରାଜା ତାଙ୍କୁ ବାଇଶି ବାଟି ଜମି ଦାନ କରିଥିଲେ । ସେ ଥିଲେ ଶ୍ରୀକ୍ଷେତ୍ରବାସୀ । କିଛିକାଳ ସଂସାରୀ ଜୀବନ ଅତିବାହିତ କଲାପରେ ସନ୍ନ୍ୟାସ ଜୀବନ ଯାପନ କରିଥିଲେ । କବି ବୃନ୍ଦାବନରେ ଦେହତ୍ୟାଗ କରିଥିଲେ । ଶ୍ରୀରାଧାକୃଷ୍ଣ, ଶ୍ରୀଜଗନ୍ନାଥଙ୍କ ରଚନା ସହିତ ବହୁ ପଦାବଳୀ ଓ କବିତା ରଚନା କରିଛନ୍ତି । ସଂସ୍କୃତ ରାମାୟଣ ଚମ୍ପୂ ଅବଲମ୍ବନରେ ସେ ସୁଚିତ୍ର ରାମାୟଣ ଗ୍ରନ୍ଥ ରଚନା କରିଥିଲେ । ଅନ୍ୟାନ୍ୟ ଗ୍ରନ୍ଥ ସହିତ କେତେକ ସୁଲଳିତ ପଦ୍ୟାବଳୀର ପ୍ରଣେତା, ସଂଗୀତକର୍ତ୍ତା ଓ ଭକ୍ତକବି । ଦୀକ୍ଷା ଗ୍ରହଣ ପୂର୍ବରୁ ତାଙ୍କ ନାମ ଥିଲା ବନମାଳୀ ପଟ୍ଟନାୟକ ।

## ୧୯- ବଳରାମ ଦାସ

ବଳରାମ ଦାସ ପ୍ରସିଦ୍ଧ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ । ଗଜପତି ପ୍ରତାପରୁଦ୍ରଙ୍କ ସମସାମୟିକ ଓ ଭାଗବତକାର ଜଗନ୍ନାଥ ଦାସଙ୍କ ଦୀକ୍ଷାଗୁରୁ । ତାଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ପଦ୍ମାବତୀ । ସେ ଜଗମୋହନ ରାମାୟଣ ସମେତ ଅନେକ ପୁସ୍ତକର ରଚୟିତା । ଲକ୍ଷ୍ମୀପୁରାଣ, ବ୍ରହ୍ମାଣ୍ଡ ଭୂଗୋଳ ପୁସ୍ତକ ସମେତ ବହୁ ସଂଖ୍ୟକ ଭଜନ ଓ ଚଉପଦୀ ରଚନା କରିଥିବାର ଜଣାଯାଏ ।

## ୨୦- ବଳଦେବ ରଥ (କବିସୂର୍ଯ୍ୟ)

ଜନ୍ମ - ୧୭୮୯ ଖ୍ରୀ: ଆଷାଢ଼ ଶୁକ୍ଳ ପଞ୍ଚମୀ ଗୁରୁବାର, ମୃତ୍ୟୁ - ୯।୫।୧୮୪୫ ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟା, ଶୁକ୍ରବାର । କବି ଶୈଶବରୁ

ମାତୃହରା ଥିଲେ । ପିତା ଉଜ୍ଜ୍ୱଳ ରଥ ଜଣେ ସୁଗାୟକ ଓ ଧୂରୀଣ ସଂସ୍କୃତପଣ୍ଡିତ ଥିଲେ । ଏଣୁ ବଳଦେବ ସଂସ୍କୃତ ସାହିତ୍ୟରେ ବିଶେଷ ପାରଦର୍ଶିତା ଲାଭ କରିପାରି ଥିଲେ । ଜଳନ୍ତର ରାଜା ତାଙ୍କୁ କବିସୂର୍ଯ୍ୟ ଉପାଧି ପ୍ରଦାନ କରିଥିଲେ ଓ ପୁରୀର ଗଜପତି ମୁକୁନ୍ଦ ଦେବ ଏହି ଉପାଧିକୁ ସ୍ୱୀକୃତି ପ୍ରଦାନ କରିଥିଲେ । କବିସୂର୍ଯ୍ୟ ଉତ୍କଳ ସଂଗୀତର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା । ଓଡ଼ିଶୀ ସଂଗୀତର ସ୍ୱାତନ୍ତ୍ୟ ଓ କ୍ଲାସିକ ଗୌରବ ଏହାଙ୍କ ରଚିତ ଚମ୍ପୂ, ଜଣାଣ, ଭଜନ, ଚଉପଦୀ ଏବଂ ବିଭିନ୍ନ ଗୀତାବଳୀରୁ ଚିହ୍ନିହୁଏ । ଜଗନ୍ନାଥଙ୍କ ପ୍ରତି ଅକୁଣ୍ଠ ଆତ୍ମୀୟତା ଓ ଭକ୍ତିବୋଧର ଅନ୍ତରଙ୍ଗତା ତାଙ୍କ ଜଣାଣରେ ପରିଲକ୍ଷିତ ହୁଏ ।

## ୨୧– ବ୍ରଜନାଥ ବଡ଼ଜେନା

ବ୍ରଜନାଥ ବଡ଼ଜେନା ଜନ୍ମ - ୧୭୩୦ ଖ୍ରୀଷ୍ଟାବ୍ଦ ବିଷୁବ ସଂକ୍ରାନ୍ତି ମୃତ୍ୟୁ - ୧୭୯୫ । ତାଙ୍କ ପିତାଙ୍କ ନାମ ବାଲୁଙ୍କେଶ୍ୱର ପଟ୍ଟନାୟକ । ବଡ଼ଜେନା ପଦ ତାଙ୍କର ରାଜଦତ୍ତ । ସେ ଢେଙ୍କାନାଳ ସହର ନିକଟସ୍ଥ କାବେରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷ ପୁରୀରେ ଅବସ୍ଥାନ କରୁଥିଲେ । ସେ ଭକ୍ତପ୍ରବର ରଘୁ ଅରକ୍ଷିତଙ୍କ ବଂଶଧର । ସେ ସଂସ୍କୃତ, ଓଡ଼ିଆ, ମରାଠି, ହିନ୍ଦୀ, ବଙ୍ଗଳା, ତେଲଗୁ ଆଦି ସାତଟି ଭାଷାରେ ଯଥେଷ୍ଟ ଜ୍ଞାନ ଅର୍ଜନ କରିଥିଲେ । କବି କେନ୍ଦୁଝର ରାଜ୍ୟରେ ରହି "ଅମ୍ବିକା ବିଳାସ" କାବ୍ୟ ରଚନା କରି ସେଠାକାର କବି ବଳଭଦ୍ର ଭଞ୍ଜଙ୍କ ନାମରେ ଭଣିତା କରିଥିଲେ । ସେ ମଧ୍ୟ "ସମର ତରଙ୍ଗ", "ଚତୁରବିନୋଦ ଓ ଗୁଣ୍ଡିଚାବିଜେ" କାବ୍ୟର ସ୍ରଷ୍ଟା ତଥା "ଚତୁରବିନୋଦ କଥା" ତାଙ୍କର ଏକ ଅନବଦ୍ୟ କୃତି ।

## ୨୨– ବଲ୍ଲଭ ଦାସ

ଅଷ୍ଟାଦଶ ଶତାବ୍ଦୀର କବି ମାତ୍ର ତାଙ୍କ ପରିଚୟ ସଂପର୍କରେ ବିଶେଷ ବିବରଣୀ ଏବେବି ମିଳେ ନାହିଁ । ସେ 'ରସକଳା ଚଉତିଶା' ରଚନା କରିଥିଲେ । କେତେକ ଭକ୍ତିଗୀତ ଓ ଭଜନ ଲେଖିଥିବାର ଜଣାଯାଏ

## ୨୩– ବାଛଧର ଦ୍ୱିଜ

ଦ୍ୱିଜ ବାଛଧରଙ୍କ ଜନ୍ମ ସପ୍ତଦଶ ଶତାବ୍ଦୀରେ ହୋଇଥିବାର ଅନୁମାନ କରାଯାଏ । ତାଙ୍କ ରଚିତ ଶ୍ରୀଜଗନ୍ନାଥଙ୍କ ଭଜନ, ଶ୍ରୀରାଧାକୃଷ୍ଣ ପଦ୍ୟ, ଶ୍ରୀ ଚୈତନ୍ୟଙ୍କ ଜଣାଣ ଓ ଅଣାକାର ଭଜନ ଓଡ଼ିଆ ଭଜନ ସାହିତ୍ୟକୁ ସମୃଦ୍ଧ କରିଛି । ପ୍ରସ୍ତୁତ ଭଜନରେ ବାମନ, ରାମ, କୃଷ୍ଣ, ଚୈତନ୍ୟ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭେଦ କଳ୍ପନା କରାଯାଇଛି ।

## ୨୪- ବୀରକେଶରୀ ଦେବ (ଗଜପତି)

ଗଜପତି ବୀରକେଶରୀ ଦେବ ଖ୍ରୀ. ୧୭୩୬ରେ ଖୋରଧା ସିଂହାସନ ଅଧିକାରକରି ଠାକୁର ରାଜା ରୂପେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ପିତା ଗଜପତି ରାମଚନ୍ଦ୍ରଦେବ (୨ୟ) ମୁସଲମାନ ଧର୍ମ ଗ୍ରହଣ କରିଥିବାରୁ, ସେ ପିତାଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ମରହଟ୍ଟା ଶାସକ ତାଙ୍କୁ ଋଣଦେୟ ବାବଦ ବନ୍ଦୀକରି ନାଗପୁରରେ ରଖିଥିଲେ । ସେହି ସମୟରେ ରାଜଦରବାରର ଦୁଇଜଣ ପ୍ରସିଦ୍ଧ ବିଦ୍ୱାନ ଚନ୍ଦ୍ରଶେଖର ରାୟଗୁରୁ ଓ ବିଶ୍ୱନାଥ ପଞ୍ଚଯୋଷୀ ନିଜର ବିଦ୍‌ବତ୍ତାର ପରାକାଷ୍ଠା ଦେଖାଇ ତାଙ୍କୁ ମୁକ୍ତ କରାଇଥିଲେ ।

## ୨୫- ବୈଦ୍ୟନାଥ ଦ୍ୱିଜ (୧୭ଶ ଶତାବ୍ଦୀ)

କବିଙ୍କ ସଂପର୍କରେ ବିଶେଷ ତଥ୍ୟ ମିଳେନାହିଁ । କିନ୍ତୁ ଏହି ଜଣାଣଟି ଏବେବି ଲୋକମୁଖରେ ଉଚ୍ଚାରିତ ହେଉଥିବା ଲକ୍ଷ୍ୟ କରାଯାଏ । ବିଛନ୍ଦ ଚରଣ ପଟ୍ଟନାୟକ ତାଙ୍କୁ ୧୭ଶ ଶତାବ୍ଦୀର ଲୋକବୋଲି ଚିହ୍ନିତ କରିଥା'ନ୍ତି । କବି କୃଷ୍ଣଭକ୍ତ, ଜଗନ୍ନାଥ ରୂପରେ କୃଷ୍ଣଙ୍କୁ ଗୁହାରିକରନ୍ତି ।

## ୨୬- ଭକ୍ତଚରଣ ଦାସ

ଭକ୍ତଚରଣ ଦାସ (ପୂର୍ବ ନାମ ବୈରାଗୀ ଚରଣ ପଟ୍ଟନାୟକ) ଖୋରଧା ଅନ୍ତର୍ଗତ ସାନପଦରରେ ୧୭୪୩ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ରଚିତ କଳାକଳେବର ଚଉତିଶା ଓ ମନବୋଧ ଚଉତିଶା ଓଡ଼ିଆ ସାହିତ୍ୟରେ ଏକ କାଳଜୟୀ ରଚନା । ସେ ମଥୁରା ମଙ୍ଗଳ, ଗୋପ ମଙ୍ଗଳ, ମନଶିକ୍ଷା ସମେତ କେତେକ ଚଉତିଶା ରଚନା କରିଛନ୍ତି ।

## ୨୭- ଭରତ ଦାସ (ଅଷ୍ଟାଦଶ ଶତାବ୍ଦୀ)

ଭରତ ଦାସଙ୍କର ବହୁ ପରିଚିତ ଦୁଇଟି ପଦାବଳୀ ବ୍ୟତୀତ ଅନ୍ୟଲେଖାର ବିଶେଷ ସଂଧାନ ମିଳେ ନାହିଁ । କବି ଶ୍ରୀଚୈତନ୍ୟ ଦେବ ପ୍ରଚାରିତ ବୈଷ୍ଣବ ଧର୍ମ ଦର୍ଶନର ଆନୁଗତ୍ୟରେ ଭକ୍ତ ଜୀବନ ନିର୍ବାହ କରୁଥିଲେ । କିନ୍ତୁ ଶ୍ରୀଜଗନ୍ନାଥଙ୍କୁ ପରମ ଇଷ୍ଟ ରୂପେ ଗ୍ରହଣ କରିଥିଲେ ।

## ୨୮- ଭାଗୀରଥି ଦେବ

କବି ଭାଗୀରଥି ଦେବ ଅଷ୍ଟାଦଶ ଶତାବ୍ଦୀର କବିବୋଲି ପଣ୍ଡିତ ନୀଳମଣି ମିଶ୍ର ଚିହ୍ନିତ କରିଛନ୍ତି । ପଣ୍ଡିତ ମିଶ୍ର ପୁଣି ସୂଚାଇଛନ୍ତି ଯେ, କବି ଭାଗୀରଥି ଦେବ, ଗଜପତି ରାମଚନ୍ଦ୍ର ଦେବ ୨ୟଙ୍କ ପୁତ୍ର ହୋଇ ପାରନ୍ତି । ପିତା ରାମଚନ୍ଦ୍ର ଦେବ ଯବନ କନ୍ୟାର ପାଣିଗ୍ରହଣ କରି ଜାତି ହରାଇଥିବାରୁ ରାଣୀ ରାଜକୁମାର ଉଆସ ଛାଡ଼ି ବିଭିନ୍ନ ସ୍ଥାନରେ ଆଶ୍ରୟ ନେଇଥିଲେ । ତାଙ୍କର ଦୁର୍ଦ୍ଦଶା ସମୟରେ ଏଇ କେତୋଟି ଜଣାଣ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚନା କରିଥିବା ସମ୍ଭବ ।

## ୨୯- ଭିକାରୀ (୧୭ଶ ଶତାବ୍ଦୀ)

କବିଙ୍କ ପରିଚୟ ସଂପର୍କରେ ବିଶେଷ ସୂଚନା ମିଳେ ନାହିଁ । "ଚନ୍ଦ୍ରାବତୀ ହରଣ" ତାଙ୍କର ଅନ୍ୟତମ ରଚନା । ଏହା ସହିତ ଜଗନ୍ନାଥଙ୍କ ଭଜନ ଓ ଶୂନ୍ୟ ଦର୍ଶନ ସଂପର୍କରେ ରଚନା କେତୋଟି ମିଳିଥାଏ । ତାଙ୍କ ଲେଖାରୁ ଉତ୍କଳୀୟ ପରଂପରା ଅନୁକ୍ରମେ ଜ୍ଞାନମିଶ୍ରା ପ୍ରେମ ଭକ୍ତିକୁ ସେ ଗ୍ରହଣ କରିଥିବା ମନେ ହୁଏ ।

## ୩୦- ମାଧବୀ ଦାସୀ

ଭକ୍ତ କବି ମାଧବୀ ଦେବୀ ପୁରୀ ଜିଲ୍ଲା, ବ୍ରହ୍ମଗିରି ଅଞ୍ଚଳର ବେଣ୍ଟପୁର ଗ୍ରାମରେ ଏକ କରଣ ବଂଶରେ ପଞ୍ଚଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ଶ୍ରୀଚୈତନ୍ୟଙ୍କ ଚାରିଜଣ ପ୍ରଧାନ ଶିଷ୍ୟଥିଲେ । ରାୟ ରାମାନନ୍ଦ, ରୂପଗୋସ୍ୱାମୀ, ଶିଖି ମହାନ୍ତି ଓ ମାଧବୀ ଦେବୀ । ମାଧବୀଙ୍କ ବଡ଼ବାପା ଭବାନନ୍ଦ ରାୟ (ରାୟ ରାମାନନ୍ଦଙ୍କ ବାପା)ଙ୍କ ପ୍ରେରଣାରେ ମାଧବୀ ବିଭିନ୍ନ ଧର୍ମ ଗ୍ରନ୍ଥ ଓ ବୈଷ୍ଣବ ଶାସ୍ତ୍ର ଅଧ୍ୟୟନ କରିଥିଲେ । ସେ ବୈଷ୍ଣବ କୀର୍ତ୍ତନାବଳୀ, ଭଜନ, ଜଣାଣ ଓ ବ୍ରଜବୋଲି ଭାଷାରେ ବହୁପଦ ରଚନା କରିଥିଲେ । ବଙ୍ଗଳା "ପଦକଳ୍ପତରୁ" ଗ୍ରନ୍ଥରେ ତାଙ୍କର ଅନେକ ପଦ୍ୟାବଳୀ ସ୍ଥାନ ପାଇଛି ।

## ୩୧- ଯଦୁମଣି ମହାପାତ୍ର

ଜନ୍ମ - ୮ ।୧ ।୧୭୮୧ ପୌଷ କୃଷ୍ଣ ତ୍ରୟୋଦଶୀ, ସୋମବାର । ମୃତ୍ୟୁ - ୧୫ ।୭ ।୧୮୬୬ ଆଷାଢ଼ ଶୁକ୍ଳ ଦ୍ୱିତୀୟା,ଶ୍ରୀଗୁଣ୍ଡିଚା ରବିବାର । ଉତ୍କଳ ଘଣ୍ଟ ଯଦୁମଣି ମହାପାତ୍ର ଗଞ୍ଜାମ ଜିଲ୍ଲାର ଆଠଗଡ଼ରେ ଜନ୍ମ ଗ୍ରହଣ କରିଥିଲେ । ନୟାଗଡ଼ ରାଜାଙ୍କ ପୃଷ୍ଠପୋଷକତା ଲାଭକରି ସେ ଇଟାମାଟିରେ ଶେଷ ଜୀବନ ଅତିବାହିତ

କରିଥିଲେ । ଯଦୁମଣିଥିଲେ ଆଶୁକବି । ଚାତୁର୍ଯ୍ୟ ଓ ବିଦ୍‌ବତ୍ତାରେ ସେ ଦକ୍ଷତାର ପରିଚୟ ଦେଇଥିଲେ । ତାଙ୍କ ଲିଖିତ ରାଘବ ବିଳାସ ଓ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ପାଠକ ପାଠିକା ମହଲରେ ସୁପରିଚିତ । ଯଦୁମଣି ରହସ୍ୟ ସହିତ କେତେ ଚଉପଦୀ, ଭଜନ ଓ ଜଣାଣ ସେ ରଚନା କରିଛନ୍ତି ।

## ୩୨- ଯଶୋବନ୍ତ ଦାସ

ପୂର୍ବତନ କଟକ ଜିଲ୍ଲା ବର୍ତ୍ତମାନ ଜଗତ୍‌ସିଂହପୁର ଜିଲ୍ଲାର ଅଡ଼ଙ୍ଗ ଗଡ଼ କବି ଯଶୋବନ୍ତ ଦାସଙ୍କ ଜନ୍ମସ୍ଥାନ । ଜନ୍ମ- ୧୪୯୦ଖ୍ରୀଷ୍ଟାବ୍ଦ । ପିତା ବଳଭଦ୍ର ମଲ୍ଲ ଓ ମାତା ରେଖାଦେବୀ । ଈଶ୍ୱର ଦାସଙ୍କ ଚୈତନ ଭାଗବତ ଅନୁଯାୟୀ ଯଶୋବନ୍ତ ଥିଲେ ଶ୍ରୀଚୈତନ୍ୟଙ୍କ ଅନୁଗତ ଭକ୍ତ । ତାଙ୍କର ଅମର କୃତି ହେଉଛି-ଗୋବିନ୍ଦଚନ୍ଦ୍ର, ଶିବସ୍ୱରୋଦୟ, ପ୍ରେମଭକ୍ତି ବ୍ରହ୍ମଗୀତା ଇତ୍ୟାଦି ଅନେକ ଗ୍ରନ୍ଥ । ସେ ବହୁ କ୍ଷୁଦ୍ର କବିତା ଓ ସାକ୍ଷୀ ରଚନା କରିଛନ୍ତି । "ଦିବ୍ୟ ଦେହ ବୋଲି" ଓ "ଦିବସ ଶେଷ କାଳେ"ରେ କବିଙ୍କର ଜଗନ୍ନାଥ ପ୍ରୀତି ପ୍ରକାଶିତ ।

## ୩୩- ରଘୁନାଥ ଦ୍ୱିଜ

ପଣ୍ଡିତ ନୀଳମଣି ମିଶ୍ର କହନ୍ତି ଯେ ଦ୍ୱିଜ ରଘୁନାଥ ହେଉଛନ୍ତି ସମ୍ଭବତଃ ଅଷ୍ଟାଦଶ ଶତାବ୍ଦୀର ଲୋକ । ମୁକ୍ତି ମଣ୍ଡପରେ ଏହାଙ୍କର ପୁରାଣ ପଣ୍ଡାର ଅଧିକାର ଥିଲା । "ଉତ୍ପାତ ତରଙ୍ଗିଣୀ", "କାଳ ନିର୍ଣ୍ଣୟର ରଚୟିତା" ରଘୁନାଥ ଦାସ ହେଉଛନ୍ତି ଦ୍ୱିଜ ରଘୁନାଥ ।

## ୩୪- ରଘୁ ଅରକ୍ଷିତ (୧୬ଶ ଶତାବ୍ଦୀ)

'ଦାଢ୍ୟତାଭକ୍ତି'ରେ ରଘୁ ଅରକ୍ଷିତ ପ୍ରସଙ୍ଗ ରହିଛି । ମେଦିନୀପୁର ଅଞ୍ଚଳର ହରିପୁର ଗ୍ରାମର ଜମିଦାର କୃଷ୍ଣ ମହାପାତ୍ରଙ୍କର ସେ ପୁତ୍ର । ପିତାମାତାଙ୍କର ମୃତ୍ୟୁ ଓ ଆର୍ଥିକ ଅବସ୍ଥା ଅତିଶୋଚନୀୟ ହୋଇ ପଡ଼ିବାରୁ ଶ୍ରୀକ୍ଷେତ୍ରରେ ଭିକ୍ଷାନ୍ନରେ ବଞ୍ଚନ୍ତି । ଏକାନ୍ତ ଜଗନ୍ନାଥ-ପ୍ରାଣ ରଘୁ ଅରକ୍ଷିତଙ୍କର ଭକ୍ତି ପ୍ରାଣତାର ଖବର ଗଜପତି ପ୍ରତାପରୁଦ୍ରଙ୍କର ଦୃଷ୍ଟି ଆର୍ଷଣ ହେବାରୁ ।" "ରଘୁନାଥ ଅର୍ଶିତ ଭଉଁରୀ ଗୋସାଇଁ" ସେବା ପାଇଥିଲେ । ତାଙ୍କ ଜଣାଣଗୁଡ଼ିକ ଇଷ୍ଟପ୍ରାଣ ଜଣେ ଆର୍ତ୍ତୀ ଭକ୍ତର ନିବେଦନ ତୁଲ୍ୟ ।

**୩୫- ରସାନନ୍ଦ ନବଘନ ଚାନ୍ଦ (୧୮ଶ ଶତାବ୍ଦୀ)**

ରସାନନ୍ଦଙ୍କ ସଂପର୍କରେ ବିଶେଷ ସୂଚନା ମିଳେନାହିଁ । ଜଗନ୍ନାଥଙ୍କର ଭକ୍ତ ହେଲେ ବି ତାଙ୍କର ମାର୍ଗ ଶୂନ୍ୟବାଦୀ ।

**୩୬- ରାମକୃଷ୍ଣ ପଟ୍ଟନାୟକ (୧୮ଶ ଶତାବ୍ଦୀ)**

ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ରଙ୍କ ସଂଗୀତାବଳୀ ଅନେକଦିନ ପର୍ଯ୍ୟନ୍ତ ପ୍ରକାଶିତ ହୋଇ ନଥିଲା । ତାଙ୍କର ଶବ୍ଦ ସଂଯୋଜନା ବେଶ ଶକ୍ତିଶାଳୀ । ଶୁଣାଯାଏ ବ୍ରଜବାସୀ ବାବାଜୀ ବୈଷ୍ଣବ ଚରଣ ଦାସ ଓରଫ ବେଣୁଧର ପଟ୍ଟନାୟକ, କବି ରାମକୃଷ୍ଣ କବିଚନ୍ଦ୍ରଙ୍କ ଭଜନ, ଜଣାଣଗଡ଼ିକ ସଂଗ୍ରହର ଆଦ୍ୟ ଉଦ୍ୟମ କରିଥିଲେ କିନ୍ତୁ ବାବାଜୀ ବୈଷ୍ଣବ ଚରଣଙ୍କ ଦେହାନ୍ତ ଯୋଗୁ ସେ ସବୁ ଲୋକଲୋଚନକୁ ଆସିପାରି ନଥିଲା ।

**୩୭- ଲୋକନାଥ ବିଦ୍ୟାଧର**

କବିଙ୍କ ସମୟ ୧୭ଶ ଶତାବ୍ଦୀ ଶେଷ ଓ ୧୮ଶ ଶତାବ୍ଦୀର ପ୍ରଥମ ଭାଗ । କବି ଗଜପତି ଦିବ୍ୟସିଂହ ଦେବଙ୍କ ପାତ୍ର ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ପୁତ୍ରଥିବା ତାଙ୍କ ନୀଳାଦ୍ରି ମହୋତ୍ସବ ଗ୍ରନ୍ଥରୁ ଜଣାଯାଏ । ସେ "ସର୍ବାଙ୍ଗ ସୁନ୍ଦରୀ", "ଚିତ୍ରକଳା" ଓ ରସକଳା ନାମକ ଅନ୍ୟ ତିନିଗୋଟି ଗ୍ରନ୍ଥ ରଚନା କରିଥିଲେ । କବି ବାଣପୁର ରାଜା ଜଗନ୍ନାଥ ହରିଚନ୍ଦନଙ୍କ ପୃଷ୍ଠପୋଷକତା ଲାଭ କରି ସେଠାରେ "ସର୍ବାଙ୍ଗ ସୁନ୍ଦରୀ" କାବ୍ୟ ପ୍ରାୟ ୧୬୯୨-୧୬୯୩ ଖ୍ରୀ.ରେ ସମାପ୍ତ କରିଥିଲେ । "ନୀଳାଦ୍ରି ମହୋତ୍ସବ" ୧୬୯୯ ରୁ ୧୭୦୦ ମଧରେ ପୁରୀ ଅବସ୍ଥାନ କାଳରେ ରଚିତ ହୋଇଥିଲା । ସେ "ପଦ୍ମାବତୀ ପରିଚୟ" ନାମକ କାବ୍ୟ ଲେଖିଥିବାର ଜଣାଯାଏ । ସେ ମଧ ଚଉତିଶୀ ମାଧମରେ ଚିଟାଉ ପ୍ରଣୟନ କରିଥିଲେ । ତାଙ୍କର "ଗୋପଲୀଳା, ସପ୍ତରାଗ ଚଉତିଶା" ନାମକ ଏକ ଚଉତିଶା ମଧ ଦେଖିବାକୁ ମିଳେ ।

**୩୮- ଶ୍ରୀଚନ୍ଦନ(୧୬ଶ ଶତାବ୍ଦୀ)**

କବି ଶ୍ରୀଚନ୍ଦନଙ୍କ ସଂପର୍କରେ ବିଶେଷ ବିବରଣୀ ଜଣାପଡୁ ନାହିଁ । ଶ୍ରୀଜଗନ୍ନାଥଙ୍କ ଚନ୍ଦନ ଲାଗି ସମୟରେ ତାଙ୍କର ଏହି ଗୀତ ଶ୍ରୀମନ୍ଦିରରେ ବୋଲା ହୋଇଥାଏ ।

**୩୯- ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା (୧୮ଶ ଶତାବ୍ଦୀ)**

କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ । ନୟାଗଡ଼ର ଶରଣକୂଳ ନିକଟବର୍ତ୍ତୀ ଭିକାରୀପଡ଼ାରେ

ତାଙ୍କର ଜନ୍ମ । ପୁରୀର ଗଜପତି ବୀରକିଶୋର ଦେବ ତାଙ୍କୁ କବିସୂର୍ଯ୍ୟ ବ୍ରହ୍ମା ଉପାଧିରେ ଭୂଷିତ କରିଥିଲେ । ସନ୍ୟାସ ଗ୍ରହଣ ପର୍ଯ୍ୟନ୍ତ ନିଜ ଗ୍ରାମରେ ଅବସ୍ଥାନ କରୁଥିଲେ । ବିଭିନ୍ନ ସ୍ଥାନରେ ରହଣି ପରେ ଗଡମଧୁପୁର ରାଜାଙ୍କ ଆଶ୍ରୟ ଗ୍ରହଣ କରି ସେଠାରେ ମଠର ମହନ୍ତ ଭାବରେ ରହିଲେ । ଅଭିମନ୍ୟୁଙ୍କ ଜମିଦାରୀ ବାଲିଆ ନିକଟବର୍ତ୍ତୀ ଦୀକ୍ଷିତ ପଡ଼ାରେ ମଠ ସ୍ଥାପନ କରି ଶେଷ ଜୀବନ ବିତାଇଲେ । ବହୁ କାବ୍ୟକବିତା ରଚନା କରି ନିଜ ନାମ ତଥା ପଦବୀର ସେ ମର୍ଯ୍ୟାଦା ରକ୍ଷା କରିପାରିଥିଲେ ।

## ୪୦- ସାନନ୍ଦ ଦ୍ୱିଜ

କବିଙ୍କ ସଂପର୍କରେ ବିଶେଷ ବିବରଣୀ ଏବେବି ଅଜ୍ଞାତ । ତାଙ୍କ ରଚିତ ଭଜନ ଯୋଗୁହିଁ ସେ ବିଶେଷ ପରିଚିତ ।

## ୪୧- ସାରଳା ଦାସ

ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦିକବି ରୂପେ ପରିଚିତ । ପୂର୍ବତନ କଟକ ଜିଲ୍ଲାର ଝଙ୍କଡ଼ପୀଠ ନିକଟସ୍ଥ ବୃଦ୍ଧା ନଦୀତୀର ତେନ୍ତୁଳୀପଦା ଗ୍ରାମରେ ତାଙ୍କର ଜନ୍ମ । ସେ ଗଜପତି କପିଳେନ୍ଦ୍ର ଦେବଙ୍କ ସମସାମୟିକ ଅର୍ଥାତ ପଞ୍ଚଦଶ ଶତାବ୍ଦୀ ମଧ୍ୟଭାଗରେ ମହାଭାରତ, ରାମାୟଣ, ଚଣ୍ଡିପୁରାଣ ଆଦି ରଚନା କରିଥିଲେ । ମହାଭାରତର ବହୁ ସ୍ଥଳରେ ସେ ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି ।

## ୪୨- ସାରିଆ ଭିକ (ସପ୍ତଦଶ ଶତାବ୍ଦୀ)

ଏକମାତ୍ର ଭଜନ ଲେଖି ସାରିଆ ଭିକ ଓଡ଼ିଆ ଜାତିର ଛାତି ଭିତରେ ଲେଖି ହୋଇଯାଇଛନ୍ତି । ଏଠାରେ ଆଉ ଏକ ପ୍ରସଙ୍ଗ ଉପସ୍ଥାପନା କରାଯାଉଛି । ଶ୍ରୀଶ୍ରୀଜଗନ୍ନାଥ ଭଜନ ସାର ସଂଗ୍ରହ( ୧ ୯ ୯ ୪ )ର ସଂପାଦକ ପଣ୍ଡିତ ନୀଳମଣି ମିଶ୍ର ଓ ଶ୍ରୀ ରାଜକିଶୋର ମିଶ୍ର ମତ ଉପସ୍ଥାପନା କରିଛନ୍ତି ଯେ, ସାଲବେଗଙ୍କ ଅନ୍ୟନାମ "ସାଳିଆ" ଥିବାର ବର୍ଣ୍ଣନା "କଳିଭାରତ" ପୁସ୍ତକରେ ରହିଛି । ସାରିଆ ଓ ସାଳିଆ ନାମରେ ସାଲବେଗ ହିନ୍ଦୁମାନଙ୍କ ଦ୍ୱାରା ପ୍ରଚାରିତ ହୋଇଥିବାର ଅନୁମାନ କରାଯାଏ । ପ୍ରସ୍ତୁତ ରଚନାର ଭାଷା, ଭାବ ଓ ଶୈଳୀ ସାଲବେଗଙ୍କ ରଚନାର ଅନୁରୂପ ହୋଇଥିବାରୁ ଏହା ସାଲବେଗଙ୍କ ରଚନା ବୋଲି କହିବା ଅସମୀଚୀନ ନୁହଁ । (ଏ ସଂପର୍କରେ ବିଶେଷ ଆଲୋଚନା ପାଇଁ "ଭକ୍ତକବି ସାଲବେଗ" ପୁସ୍ତକର ୬୩ ପୃ. ଦ୍ରଷ୍ଟବ୍ୟ )

## ୪୩- ସାଲବେଗ (ସପ୍ତଦଶ ଶତାବ୍ଦୀ)

ସାଲବେଗଙ୍କ ଜଗନ୍ନାଥ ଜଣାଣ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ ଓ ସୁପ୍ରଚାରିତ । ତାଙ୍କର ପିତା ଲାଲବେଗ ମୋଗଲ ପଠାଣ ଓ ମାତା ପୁରୀ ଦାଣ୍ଡ ମୁକୁନ୍ଦପୁର ଶାସନର ଜଣେ ବିଧବା ବ୍ରାହ୍ମଣୀ । କେବଳ ଓଡ଼ିଆ ନୁହେଁ, ବଙ୍ଗଳା ସଂସ୍କୃତ ଓ ବ୍ରଜବୁଲି ଭାଷାରେ ସେ ଅନେକ ଭଜନ ରଚନା କରିଛନ୍ତି । ଭଜନ ଆନ୍ତରିକ ଆବେଦନରେ ପରିପୂର୍ଣ୍ଣ । ଜଗନ୍ନାଥ ହେଉଛନ୍ତି ସାଲବେଗଙ୍କର ଇଷ୍ଟ । ଭାବ ଓ ଭକ୍ତ ଚେତନାରେ କିମ୍ବା ସାହିତ୍ୟିକ ଗୁଣ ଗାରିମାରେ ଏଗୁଡ଼ିକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ ।

## ୪୪- ହନୁମାନ ରାୟଗୁରୁ

ଗଞ୍ଜାମ ଜିଲ୍ଲାର ଋଷିକୁଲ୍ୟା ନଦୀର ଉପକଣ୍ଠରେ ଅବସ୍ଥିତ ବ୍ରାହ୍ମଣଛାଇ ଗ୍ରାମରେ କବିଚନ୍ଦ୍ର ହନୁମାନ ରାୟଗୁରୁଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଈଶ୍ୱର ପ୍ରହରାଜ ଓ ମାତାଙ୍କ ନାମ ଅମ୍ବିକା ଦେବୀ । କବିଚନ୍ଦ୍ର ଥିଲେ ଜଣେ ନିଷ୍ଠାବାନ କୃଷ୍ଣଭକ୍ତ । କବିଚନ୍ଦ୍ରଙ୍କର ଜୀବନ, ଜନସେବା ଭଗବତ୍ ସେବା ଓ ସାରସ୍ୱତ ସେବାରେ ହିଁ ଅତିବାହିତ ହୋଇଥିଲା । ଜଣାଣ, ଭଜନ,ଚଉପଦୀ,ଢ଼ୁମ୍ପା,କୋଇଲି, ଚଉତିଶା ଓ ରାସପଞ୍ଚାଧ୍ୟାୟୀ ଆକାରରେ କବିଚନ୍ଦ୍ର ବହୁପଦ୍ୟାବଳୀ ରଚନାକରି ପୌଷ ଶୁକ୍ଳ ଏକାଦଶୀ ତିଥିରେ ସ୍ୱର୍ଗାରୋହଣ କରିଥିଲେ ।

## ୪୫- ହରେକୃଷ୍ଣ ସିଂହ ଯୁବରାଜ (ଅଷ୍ଟାଦଶ ଶତାବ୍ଦୀ)

କବିଙ୍କ ସଂପର୍କରେ ବିଶେଷ କିଛି ତଥ୍ୟ ମିଳେନାହିଁ । ତାଙ୍କର ଏହି ଭଜନଟି ଲୋକକଣ୍ଠରେ ବହୁଳ ପ୍ରଚାରିତ ।

## ୪୬- ହାଡ଼ି ଦାସ

ଛତିଆ ବଟର ମହନ୍ତ ହାଡ଼ିଦାସ ଖ୍ରୀ:୧୭୭୨ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଗ୍ରାମ ଥିଲା ଯାଜପୁର ଅନ୍ତର୍ଗତ ଚମ୍ପାପୁର । ତାଙ୍କର ପିତାମାତା ଚେମେଇ ଓଝା ଓ ଦେବକୀ ଦେବୀ । ସେ ଜାତିରେ କମାର ଥିଲେ । ସେ ଶଙ୍ଖନାଭି, ମାଳିକା, ଅନନ୍ତଗୋଇ ଆଦି ପୁସ୍ତକ ତଥା ଭଜନ ଚଉପଦୀ, ଜାମୁଡ଼ାଳି ଗୀତ, ମାଳଶ୍ରୀ (ଦେବୀ ଭଜନ) ଆଦି ରଚନା କରିଥିଲେ ।

## ୪୭- ହୃଦାନନ୍ଦ ଦାସ

କବିଙ୍କ ସଂପର୍କରେ ବିଶେଷ ବିବରଣୀ ମିଳେ ନାହିଁ ତାଙ୍କ ରଚିତ ଭଜନ ଯୋଗୁହିଁ ସେ ପରିଚିତ ।



# ସହାୟକ ଗ୍ରନ୍ଥସୂଚୀ

୧ । ଅଚ୍ୟୁତାନନ୍ଦ ରଚନାବଳୀ- କବିତା ଖଣ୍ଡ- ସଂପାଦକ- ରତ୍ନାକର ଚଇନି
ପ୍ରକାଶକ ଅଚ୍ୟୁତାନନ୍ଦ ସ୍ମୃତି ସଂସଦ, ନେମାଳ, କଟକ-୨୦୧୧

୨ । ଓଡ଼ିଆ ଗୀତିକାବ୍ୟ ସଂକଳନ- (୧୯୭୭)
(ସଂପାଦନା) ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
ପ୍ରକାଶକ-ଓଡ଼ିଶା ସାହିତ୍ୟ ଏକାଡ଼େମୀ,ଭୁବନେଶ୍ୱର

୩ । ଓଡ଼ିଆ ଗୀତିକାବ୍ୟ- ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
ପ୍ରକାଶକ -ଗ୍ରନ୍ଥମନ୍ଦିର-କଟକ

୪ । ଓଡ଼ିଆ ଭକ୍ତି ସଂଗୀତ - ସଂକଳନ ଓ ସଂପାଦନା- ଅର୍ଚ୍ଚନା ନାୟକ
ସାହିତ୍ୟ ଅକାଦେମୀ, ଦିଲ୍ଲୀ- ପ୍ରଥମ ପ୍ରକାଶ-୨୦୦୭

୫ । ଓଡ଼ିଆ ଲେଖକ ପରିଚୟ(୧୪୫୦-୧୮୫୦)
କୃଷ୍ଣଚରଣ ସାହୁ- ପ୍ରଥମ ପ୍ରକାଶ-୧୯୮୧
ପ୍ରକାଶକ-ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

୬ । କବିକଣ୍ଠେ ଶ୍ରୀଜଗନ୍ନାଥ- ସଂକଳକ- ମୁରାରୀ ମୋହନ ଜେନା
ପ୍ରଥମ ପ୍ରକାଶ-୧୯୭୯ ଫେଣ୍ଡସ ପବ୍ଲିଶର୍ସ- କଟକ-୨

୭ । ଗୋପାଳକୃଷ୍ଣ ପଦ୍ୟାବଳୀ- ଓଡ଼ିଶା ସାହିତ୍ୟ ଏକାଡେମୀ (୨୦୦୪)

୮ । ଚଉପଦୀ ଭୂଷଣ ଓ ଅନ୍ୟାନ୍ୟ କବିତା- କବି ଦୀନକୃଷ୍ଣ ଦାସ
ସଂପାଦନା- କୃଷ୍ଣଚରଣ ସାହୁ
ରାଜାରାଣୀ ପେପର ବ୍ୟାକସ୍, ଭୁବନେଶ୍ୱର-୨ (୧୯୯୪)

୯ । ନୀଳାଦ୍ରି ମହୋତ୍ସବ- ଲୋକନାଥ ବିଦ୍ୟାଧର : ସଂପାଦନା- ଶ୍ରୀମତୀ ଶକୁନ୍ତଳା ପଣ୍ଡା- ପ୍ରଥମ ସଂସ୍କରଣ-୧୯୯୧, ପ୍ରକାଶକ-ସଂସ୍କୃତି ନିର୍ଦ୍ଦେଶାଳୟ ଓଡ଼ିଶା, ଭୁବନେଶ୍ୱର ।

୧୦ । ପକ୍ଷୀଏ ଯାର ବ୍ୟାକରଣ - ଚୟନ ସଂପାଦନ- ସୀତାକାନ୍ତ ମହାପାତ୍ର
ପ୍ରକାଶକ-ନ୍ୟାସନାଲ ବୁକ୍ ଟ୍ରଷ୍ଟ ଇଣ୍ଡିଆ -୧ମ ମୁଦ୍ରଣ-୨୦୦୩

୧୧ । ପଞ୍ଚସଖା ଯଶୋବନ୍ତ ରଚନାବଳୀ- ସଂପାଦନା-ଗୌରାଙ୍ଗ ଚରଣ ରାୟ
ପ୍ରକାଶକ- ଆର୍ଯ୍ୟ ପ୍ରକାଶନ- କଟକ-୨ (୧୯୯୮)

୧୨ । ବ୍ରଜନାଥ ଗ୍ରନ୍ଥାବଳୀ- ସଂପାଦନା- ସୁଧାକର ପଟ୍ଟନାୟକ
ଓଡ଼ିଶା ସାହିତ୍ୟ ଏକାଡେମୀ- (୧୯୬୫)

୧୩ । ଶ୍ରୀଶ୍ରୀଜଗନ୍ନାଥ ଜଣାଣ ଭଜନ- କଳିଙ୍ଗ ଭାରତୀ ଗ୍ରନ୍ଥମାଳା- ଗୀତ
କଳ୍ପତରୁ ଦ୍ୱିତୀୟ ଶାଖା- ସଂପାଦନା- ବିଚ୍ଛନ୍ଦ ଚରଣ ପଟ୍ଟନାୟକ
ଦ୍ୱିତୀୟ ମୁଦ୍ରଣ- ୧୯୯୨-୯୩

୧୪ । ଶ୍ରୀଶ୍ରୀଜଗନ୍ନାଥ ଭଜନ ସାର ସଂଗ୍ରହ-(୧୯୯୪)
ସଂପାଦନା- ନୀଳମଣି ମିଶ୍ର ଓ ରାଜକିଶୋର ମିଶ୍ର
ପ୍ରକାଶକ- ସୂଚନା ଓ ଲୋକ ସମ୍ପର୍କ ବିଭାଗ,ଓଡ଼ିଶା ସରକାର

୧୫ । ଶ୍ରୀଜଗନ୍ନାଥ ପଦ୍ୟାବଳୀ-
ସଂପାଦନ- କ୍ଷେତ୍ରବାସୀ ନାୟକ ଓ ଲାବଣ୍ୟ ନାୟକ
ପ୍ରଥମ ସଂସ୍କରଣ- ୨୦୧୦

୧୬ । ଶ୍ରୀଜଗନ୍ନାଥ ଲୀଳାମୃତ- ସଂପାଦନା- କୃଷ୍ଣଚରଣ ସାହୁ
ପ୍ରଥମ ସଂସ୍କରଣ-୧୯୭୮ ପ୍ରକାଶକ- ସାଥିମହଲ, ବିନୋଦ ବିହାରୀ, କଟକ -୨

୧୭ । ହେତୁ ଉଦୟ ଭାଗବତ- ଶିଶୁ ଅନନ୍ତ ଦାସ
ଓଡ଼ିଆ ତତ୍ତ୍ୱ ସାହିତ୍ୟ-(୨୦୦୭)
ସଂକଳନ ଓ ସଂପାଦନା- ଯତୀନ୍ଦ୍ରମୋହନ ମହାନ୍ତି
ପ୍ରକାଶକ- ବିଦ୍ୟା, ଭକ୍ତମଧୁ ନଗର, ଭୁବନେଶ୍ୱର ।



୧୦ । ପକ୍ଷୀଏ ଯାର ବ୍ୟାକରଣ - ଚୟନ ସଂପାଦନ- ସୀତାକାନ୍ତ ମହାପାତ୍ର
ପ୍ରକାଶକ-ନ୍ୟାସନାଲ ବୁକ୍ ଟ୍ରଷ୍ଟ ଇଣ୍ଡିଆ -୧ମ ମୁଦ୍ରଣ-୨୦୦୩

୧୧ । ପଞ୍ଚସଖା ଯଶୋବନ୍ତ ରଚନାବଳୀ- ସଂପାଦନା-ଗୌରାଙ୍ଗ ଚରଣ ରାୟ
ପ୍ରକାଶକ- ଆର୍ଯ୍ୟ ପ୍ରକାଶନ- କଟକ-୨ (୧୯୯୮)

୧୨ । ବ୍ରଜନାଥ ଗ୍ରନ୍ଥାବଳୀ- ସଂପାଦନା- ସୁଧାକର ପଟ୍ଟନାୟକ
ଓଡ଼ିଶା ସାହିତ୍ୟ ଏକାଡେମୀ- (୧୯୬୫)

୧୩ । ଶ୍ରୀଶ୍ରୀଜଗନ୍ନାଥ ଜଣାଣ ଭଜନ- କଳିଙ୍ଗ ଭାରତୀ ଗ୍ରନ୍ଥମାଳା- ଗୀତ
କଳ୍ପତରୁ ଦ୍ୱିତୀୟ ଶାଖା- ସଂପାଦନା- ବିଚ୍ଛନ୍ଦ ଚରଣ ପଟ୍ଟନାୟକ
ଦ୍ୱିତୀୟ ମୁଦ୍ରଣ- ୧୯୯୨-୯୩

୧୪ । ଶ୍ରୀଶ୍ରୀଜଗନ୍ନାଥ ଭଜନ ସାର ସଂଗ୍ରହ-(୧୯୯୪)
ସଂପାଦନା- ନୀଳମଣି ମିଶ୍ର ଓ ରାଜକିଶୋର ମିଶ୍ର
ପ୍ରକାଶକ- ସୂଚନା ଓ ଲୋକ ସମ୍ପର୍କ ବିଭାଗ,ଓଡ଼ିଶା ସରକାର

୧୫ । ଶ୍ରୀଜଗନ୍ନାଥ ପଦ୍ୟାବଳୀ-
ସଂପାଦନ- କ୍ଷେତ୍ରବାସୀ ନାୟକ ଓ ଲାବଣ୍ୟ ନାୟକ
ପ୍ରଥମ ସଂସ୍କରଣ- ୨୦୧୦

୧୬ । ଶ୍ରୀଜଗନ୍ନାଥ ଲୀଳାମୃତ- ସଂପାଦନା- କୃଷ୍ଣଚରଣ ସାହୁ
ପ୍ରଥମ ସଂସ୍କରଣ-୧୯୭୮ ପ୍ରକାଶକ- ସାଥିମହଲ, ବିନୋଦ ବିହାରୀ, କଟକ -୨

୧୭ । ହେତୁ ଉଦୟ ଭାଗବତ- ଶିଶୁ ଅନନ୍ତ ଦାସ
ଓଡ଼ିଆ ତତ୍ତ୍ୱ ସାହିତ୍ୟ-(୨୦୦୭)
ସଂକଳନ ଓ ସଂପାଦନା- ଯତୀନ୍ଦ୍ରମୋହନ ମହାନ୍ତି
ପ୍ରକାଶକ- ବିଦ୍ୟା, ଭକ୍ତମଧୁ ନଗର, ଭୁବନେଶ୍ୱର ।



